# ଆମ ଜାତୀୟ ପତାକାର

# ଜନ୍ମ କାହାଣୀ

ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଉପଲକ୍ଷେ ପ୍ରକାଶିତ

ଜଳଂଧର ସାହୁ



ଗୁରୁଜୀ ବୁକ୍ ଷ୍ଟଲ୍

ପୁସ୍ତକ ପ୍ରକାଶକ

ଝାଞ୍ଜିରୀମଙ୍ଗଳା, କଟକ-୯

ଫୋନ୍– ୬୨୪୯୧୦

❊ ଉତ୍ସର୍ଗ ❊

ଶ୍ରୀ ଗୁରୁଦେବଙ୍କ ପଦ ପଙ୍କଜରେ ପୁସ୍ତକଟିକୁ ଅର୍ପଣ କରୁଛି ।

# ଆମ ଜାତୀୟ ପତାକାର ଜନ୍ମ କାହାଣୀ


ଲେଖକ :

**ଜଳଂଧର ସାହୁ,**

ବି.ଏ., ବି.ଏଡ୍., ଡିପ୍. ଇନ୍. ମାଲାୟାଲମ୍,

ପ୍ରଧାନ ଶିକ୍ଷକ, ବାଲିଝରୀ ମ.ଇ.ସ୍କୁଲ,

ନରସିଂହପୁର, କଟକ ।



ସତ୍ତ୍ୱାଧିକାରୀ :

ଶ୍ରୀମତୀ ପ୍ରମୋଦିନୀ ସାହୁ

ପ୍ରକାଶକ :

**ଗୁରୁଜୀ ବୁକ୍ ଷ୍ଟଲ୍**

ଝାଞ୍ଜିରୀମଙ୍ଗଳା, କଟକ-୯

ପ୍ରଥମ ପ୍ରକାଶନ

ସ୍ୱାଧୀନତା ଦିବସ, ୧୯୯୭

ଅକ୍ଷର ଅଳଙ୍କରଣ

**କମ୍ପ୍ୟୁପ୍ରିଣ୍ଟ**

ଭାଷାକୋଷ ଲେନ୍, କଟକ-୨

ମୁଦ୍ରଣ :

**ଗୁରୁଜୀ ପ୍ରେସ୍**

ଝାଞ୍ଜିରୀମଙ୍ଗଳା, କଟକ-୯

ମୂଲ୍ୟ— ଟ ୮.୦୦

# ——ମୁଖବନ୍ଧ——

"ସବୁବେଳେ ପକେଟ୍‌ରେ କାଗଜ ଖଣ୍ଡେ ଓ ପେନ୍‌ସିଲ୍‌ଟିଏ ରଖିଥିବ ।" ଏହା ଆମର ପ୍ରିୟ ଅଧ୍ୟାପକ ଶ୍ରୀ ରାଧାମୋହନଙ୍କ ପରାମର୍ଶ । ତାଙ୍କର ସେଇ କଥାଟି ସବୁବେଳେ ମନେଥାଏ । ସୌଭାଗ୍ୟକୁ ଭାରତର ପ୍ରମୁଖ ସହର ଓ ଭୁଟାନ୍‌ର ମୁଖ୍ୟ ଟାଉନ୍ ଗୁଡ଼ିକୁ ପରିଦର୍ଶନ କରିବାର ସୁଯୋଗ ଲାଭ କରିଛି । ବିଶେଷତଃ ବିଭିନ୍ନ ସ୍ଥାନରେ ଥିବା ସଂଗ୍ରହାଳୟ ଗୁଡ଼ିକୁ ନିଶ୍ଚିତ ରୂପେ ଦେଖିବାର ଝୁଙ୍କ୍ ବି ଥାଏ । ଭବିଷ୍ୟତରେ କ'ଣ ଦରକାରରେ ଆସିବ ନ ଆସିବ ସେକଥା ଚିନ୍ତା ନକରି ଯାହା ଭଲ ଲାଗିଲା ସେସବୁ ଭ୍ରମଣ ଡାଇରୀରେ ଟିପି ରଖେ । ଏସବୁ ସହିତ 'ସାଂସ୍କୃତିକ ସ୍ରୋତ ଏବଂ ପ୍ରଶିକ୍ଷଣ କେନ୍ଦ୍ର' ନୂଆଦିଲ୍ଲୀର ଏକ କାର୍ଯ୍ୟକ୍ରମରେ ଯୋଗଦେବା ଅବସରରେ ପୁଣି ଦିଲ୍ଲୀରେ (୧୯୯୫ରେ) ମାସାଧିକ କାଳ ରହିବା ଏବଂ ବିଭିନ୍ନ ସଂଗ୍ରହାଳୟ ତନ୍ନ ତନ୍ନ କରି ଦେଖିବାର ସୌଭାଗ୍ୟ ମିଳିଲା । ଏସବୁ ସ୍ଥାନରୁ ସଂଗୃହିତ ତଥ୍ୟ ଓ ଧାରଣାକୁ ଭିତ୍ତିକରି ଛାତ୍ରଛାତ୍ରୀ ମାନଙ୍କ ପାଇଁ ଏକ "ଇତିହାସ ପ୍ରକଳ୍ପ" ଆୟୋଜନ କରିବା ପାଇଁ ମନରେ ବାସନା ଜାଗିଲା ।

୧୯୯୬ ଫେବୃଆରୀ ମାସରେ ନିଜ ବିଦ୍ୟାଳୟ – ବାଲିଝରୀ ମଧ ଇଂରାଜୀ ବିଦ୍ୟାଳୟ – ରେ 'ଭାରତୀୟ ସ୍ୱାଧୀନତା ଆନ୍ଦୋଳନ, ଏକ ଛବିଳ ଇତିହାସ' ଶୀର୍ଷକ ଏକ ଇତିହାସ ପ୍ରକଳ୍ପ ଓ "ସ୍ୱାଧୀନତା ଆନ୍ଦୋଳନ" ଶୀର୍ଷକ ଏକ ଆଲୋଚନା ଚକ୍ର ଆୟୋଜନ କଲୁ । ସେଥିରେ ଏକ ପ୍ରୋଜେକ୍ଟ ଥିଲା— 'ତ୍ରିରଙ୍ଗା ପତାକାର କ୍ରମ ବିକାଶ' । ପ୍ରତ୍ୟେକ ଦର୍ଶକ ଓ ବୁଦ୍ଧିଜୀବୀଙ୍କୁ ଏହା ଖୁବ୍ ଆକୃଷ୍ଟ କରିଥିଲା । ତେଣୁ ଶିଶୁ ଓ ନବସାକ୍ଷର ମାନଙ୍କ ପାଇଁ ତ୍ରିରଙ୍ଗା ପତାକାର କ୍ରମ ପରିବର୍ତ୍ତନ ଉପରେ ଏକ ପୁସ୍ତକ ରଚନା କରିବା ପାଇଁ ଗୁରୁଜନ ମାନଙ୍କଠାରୁ ପ୍ରେରଣା ମିଳିଲା । ମନରେ ତାହା ସୁପ୍ତ ଅବସ୍ଥାରେ ରହିଥିଲା । ଦେଶରେ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଉଦ୍‌ଘାଟନ ଅବସରରେ ତାହା ଜାଗିଉଠିଲା । ତେଣୁ ଏହି ପୁସ୍ତକଟି ଲେଖି ବସିଲି ।

ତା ୧୫.୮.୯୭ — ଶ୍ରୀ ଜଳଂଧର ସାହୁ

ଶୁକ୍ରବାର — ପ୍ରଧାନ ଶିକ୍ଷକ,

ବାଲିଝରୀ ମଧ ଇଂରାଜୀ ବିଦ୍ୟାଳୟ ।

# ସୂଚୀ

# ଭାରତ ବର୍ଷ ମହାନ୍

ଆମ ଦେଶ ଭାରତ ବର୍ଷ ମହାନ୍ । ଏହାର ମାଟି, ପାଣି, ପବନ-ପବିତ୍ର । ଏହାର ସଭ୍ୟତା ଅତି ପୁରାତନ । ଏହାର ସଂସ୍କୃତି ଉନ୍ନତ । ଏହାର କୃଷକ କାମିକା ଓ ପରିଶ୍ରମୀ, ସୈନିକ ବୀର ଓ ସାହସୀ, ବୈଜ୍ଞାନିକ ଗବେଷଣା ଜ୍ଞାନରେ ଗରୀୟାନ୍ । ଏହାର କୃଷିକ୍ଷେତ୍ର ଚିର ସବୁଜ, ଝରଣା ଚିରନ୍ତନୀ, ନଦୀ ଚିର ସ୍ରୋତା, ଆଉ ଅରଣ୍ୟ ଚିର ସବୁଜିମାରେ ବିମଣ୍ଡିତ, ଫଳ, ପୁଷ୍ପରେ ଶୋଭାବନ୍ତ । ଏହି ଯେ ଆମର ପ୍ରିୟ ଭାରତବର୍ଷ, ତାହା ଦେଶମାନଙ୍କ ଭିତରେ ରାଣୀ ।

୧୯୯୭ ମସିହା । ଏହି ବର୍ଷ ଆମ ଦେଶ ତା'ର ସ୍ୱାଧୀନତାର 'ସୁବର୍ଣ୍ଣ-ଜୟନ୍ତୀ' ପାଳନ କରୁଛି । ଆମେ ସ୍ୱାଧୀନତା ହାସଲ କରିବାର ପଚାଶ ବର୍ଷ ହେବାରୁ ଦେଶବାସୀ ଏହି ଉତ୍ସବ ପାଳନ କରୁଛନ୍ତି । ପଚିଶ ବର୍ଷରେ ରଜତ ଜୟନ୍ତୀ, ପଚାଶ ବର୍ଷରେ ସୁବର୍ଣ୍ଣ ଜୟନ୍ତୀ, ଷାଠିଏ ବର୍ଷରେ ହୀରକ ଜୟନ୍ତୀ, ପଞ୍ଚସ୍ତରୀ ବର୍ଷରେ ପ୍ଲାଟିନମ୍ ଜୟନ୍ତୀ ଓ ଶହେ ବର୍ଷରେ ଶତ ବାର୍ଷିକୀ ପାଳନ କରାଯାଏ । ଇଂରେଜ ଶାସନ ଅଧୀନରୁ ଆମେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ମୁକ୍ତ ହୋଇ ସ୍ୱାଧୀନ ହେଲେ । ସେହି ଦିନଠାରୁ ଆମଦେଶ ଏକ ସ୍ୱାଧୀନ ରାଷ୍ଟ୍ର ହିସାବରେ ପୃଥିବୀରେ ପରିଚିତ ହେଲା । ଭାରତର ଶାସନଭାର ପୁଣି ଭାରତୀୟ ମାନଙ୍କ ହାତକୁ ଫେରି ଆସିଲା ।

ନୂଆଦିଲ୍ଲୀରେ ପାର୍ଲାମେଣ୍ଟ ଭବନ ଅବସ୍ଥିତ । ତାର 'କେନ୍ଦ୍ରୀୟ ହଲ୍' ରେ କ୍ଷମତା ହସ୍ତାନ୍ତର ଉତ୍ସବ ଅନୁଷ୍ଠିତ ହୋଇଥିଲା । ୧୯୪୭ ମସିହା ଅଗଷ୍ଟ ୧୪ ତାରିଖ ରାତି ୧୦ ଘଟିକା ୪୫ ମିନିଟ୍‌ରେ କ୍ଷମତା ହସ୍ତାନ୍ତର ଉତ୍ସବ ଆରମ୍ଭ ହୋଇଥିଲା । ସର୍ବ ପ୍ରଥମେ ଆଚାର୍ଯ୍ୟ ଜେ. ବି. କୃପାଳିନୀଙ୍କ ଧର୍ମପତ୍ନୀ ଶ୍ରୀମତୀ ସୁଚେତା କୃପାଳିନୀ ''ବନ୍ଦେ ମାତରମ୍'' ଗାନ କରିଥିଲେ । ତାପରେ ଶାସକ-ବିଧାୟକ ସଭାର ସଭାପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ପ୍ରାରମ୍ଭିକ ଅଭିଭାଷଣ ପ୍ରଦାନ କରିଥିଲେ । ପରବର୍ତ୍ତୀ କାର୍ଯ୍ୟକ୍ରମ ଥିଲା ''ଶପଥ ପତ୍ର ଆଗତ'' ଓ ''ଶପଥ ପାଠ'' ।

ପଣ୍ଡିତ ଜବାହରଲାଲ ନେହେରୁ ଶପଥ ପତ୍ର ଆଗତ କରିଥିଲେ । ଚୌଧୁରୀ ଖଲ୍ଲୀତୁଜାମନ୍, ଡକ୍ଟର ସର୍ବପଲ୍ଲୀ ରାଧାକ୍ରୀଷ୍ଣନ୍ ଏହାକୁ ସମର୍ଥନ କରିଥିଲେ । ତାପରେ ସଭାପତି ରାଜେନ୍ଦ୍ର ପ୍ରସାଦ ହିନ୍ଦୀ ଓ ଇଂରାଜୀରେ ଶପଥ ପାଠ କରିଥିଲେ । ଶାସନ ବିଧାୟକ ସଭାର ଅନ୍ୟ ସମସ୍ତ ସଦସ୍ୟମାନେ ନିଜ ନିଜ ସ୍ଥାନରେ ଠିଆ ହୋଇ ତାହା ପାଳି ଧରିଥିଲେ । ତାପରେ ଆରମ୍ଭ ହେଲା ପ୍ରଧାନ ମନ୍ତ୍ରୀଙ୍କ ଶପଥ ପାଠ । ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଭାବେ ପଣ୍ଡିତ ଜବାହର ଲାଲ ନେହେରୁ ଶପଥ ଗ୍ରହଣ କରି ଇଂରେଜ ଶାସନର ଅବସାନ ଘଟାଇଲେ । ବ୍ରିଟେନ୍‌ର ଜାତୀୟ ପତାକା ''ଇଉନିୟନ୍ ଜ୍ୟାକ୍''ର ଅବତରଣ କରାଯାଇ ଭାରତର ଜାତୀୟ ପତାକା ''ତ୍ରିରଙ୍ଗ ପତାକା'' ଉତ୍ତୋଳନ କରାଗଲା ।

ସ୍ୱାଧୀନତା ଆନ୍ଦୋଳନରେ ଭାଗନେଇ ଆତ୍ମବଳୀ ଦେଇଥିବା ଅମର ଶହୀଦ ମାନଙ୍କ ପ୍ରତି ସ୍ନେହ, ଶ୍ରଦ୍ଧା ଅର୍ପଣ କରିବା ପାଇଁ ପଣ୍ଡିତ ନେହେରୁ ଏକ ପ୍ରସ୍ତାବ ଆଗତ କଲେ । ଉପସ୍ଥିତ ସମସ୍ତ ସଭ୍ୟଗଣ ଦୁଇମିନିଟ୍ ନିଜ ନିଜ ସ୍ଥାନରେ ଠିଆ ହୋଇ ନୀରବ ପ୍ରାର୍ଥନା କରି ବୀର ଶହୀଦ ମାନଙ୍କ ପ୍ରତି ନିଜର ଭକ୍ତିପୁଷ୍ପ ଅର୍ପଣ କଲେ । ପ୍ରଚଣ୍ଡ ତୋପ ଧ୍ୱନି ଓ 'ମହାତ୍ମା ଗାନ୍ଧି କି ଜୟ' ଧ୍ୱନି ମଧ୍ୟରେ ଶପଥ ଗ୍ରହଣ ଉତ୍ସବ ସମାପ୍ତ ହେଲା । ଠିକ୍ ରାତି ବାରଟାରେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଉଦ୍‌ବୋଧନ ଦେଇ ଘୋଷଣା କରିଥିଲେ— ''ଯେତେବେଳେ ସମସ୍ତେ ଶୋଇଯାଇଛନ୍ତି ଠିକ୍ ସେତିକି ବେଳେ ଭାରତ ସ୍ୱାଧୀନ ହେଉଛି ।''

ରାତି ପାହିଲା । ଅଗଷ୍ଟ ୧୫ ତାରିଖ ଶୁକ୍ରବାର ହେଲା । ତା'ର ସୂର୍ଯ୍ୟୋଦୟ, ତା'ର ସକାଳର ସମୀରଣ ଆମ ସମସ୍ତଙ୍କୁ ନୂଆ ନୂଆ ଲାଗିଲା, ବହୁ ପ୍ରତିକ୍ଷୀତ ସ୍ୱାଧୀନତାର ଅମୃତମୟ ସ୍ପର୍ଶ ସମସ୍ତଙ୍କ ତନୁ ମନକୁ ପୁଲ୍ଲକିତ କଲା । ଭାରତର ପୁରପଲ୍ଲୀ ସର୍ବତ୍ର ତ୍ରିରଙ୍ଗ ପତାକା ଫର ଫର ହୋଇ ଉଡ଼ିଲା । କୋଟି କୋଟି ଭାରତୀୟଙ୍କ କଣ୍ଠରୁ ବାରମ୍ବାର ଉଚ୍ଚାରିତ ହେଲା — ''ବନ୍ଦେ ମାତରମ୍''

ସକାଳ ୮ ଟାରେ ଦେଶର ପ୍ରଧାନମନ୍ତ୍ରୀ ଇତିହାସ ପ୍ରସିଦ୍ଧ ଲାଲକିଲ୍ଲା ଦୁର୍ଗ ଉପରୁ ଜାତୀୟ ପତାକା ଉତ୍ତୋଳନ କରି ସ୍ୱାଧୀନ ଭାରତକୁ ସମ୍ବୋଧିତ କଲେ ।

ଏ ଯେଉଁ ତ୍ରିରଙ୍ଗ ପତାକା ସ୍ୱାଧୀନ ଭାରତରେ ଉତ୍ତୋଳିତ ହେଲା, ଯାହା ଏକ ସ୍ୱାଧୀନ ରାଷ୍ଟ୍ରର ନିଶାଣ, ଯାହା ଏକ ସ୍ୱାଧୀନ ଜାତିର ଜାତୀୟ ଆଦର୍ଶ ଓ ଜାତୀୟ ଗୌରବ, ସେହି ଜାତିୟ ପତାକାର ଏକ ଗୌରବମୟ ଇତିହାସ ଅଛି ।

ଭାରତବର୍ଷ ଏକ ବିଭବଶାଳୀ ଦେଶ ଥିଲା । ତା'ର ଧନ ସମ୍ପଦ ଓ ପ୍ରାଚୁର୍ଯ୍ୟରେ ଈର୍ଷାତୁର ହୋଇ ଗ୍ରୀସ୍, ବେବିଲୋନ୍, କୁଶାନ, ମୋଗଲ, ପର୍ତ୍ତୁଗୀଜ ପ୍ରଭୃତି ବିଦେଶୀ ଶତ୍ରୁଦଳ ଆମ ଦେଶକୁ ଆକ୍ରମଣ କରି ବାରମ୍ବାର ଲୁଣ୍ଠନ କରୁଥିଲେ । ଅବଶେଷରେ ସେମାନେ ଏଇ ଦେଶରେ ବସତି ସ୍ଥାପନ କରି ଏଇ ଦେଶର ସଂସ୍କୃତି, ଏଇ ଦେଶର ସଭ୍ୟତାରେ ଲୀନ ହୋଇ ଗଲେ । ଏହି ଦେଶର ମାଟିକୁ 'ମାଆଟି' ବୋଲି ସମ୍ବୋଧନ କରି ତା'ର ପଦ ସେବା କଲେ ।

ମାତ୍ର ଇଂରେଜ ଜାତି ଏମାନଙ୍କ ଠାରୁ ଭିନ୍ନ । ବେପାର କରିବାକୁ ଆସୁ ଆସୁ ଏ ଦେଶରେ ମାଲିକପଣିଆ ଦେଖାଇଲା । ସେମାନେତ କୁଟନୀତିଆ ଜାତି । ସେମାନଙ୍କ ମନଭୁଲାଣିଆ କଥାରେ ଆମ ରାଜା, ମହାରାଜାମାନେ ଭଳିଗଲେ । ସେମାନଙ୍କୁ ଦେଶରେ ସବୁପ୍ରକାରର ସୁବିଧା ସୁଯୋଗ ପ୍ରଦାନ କଲେ । ହାତ ପଶୁ ପଶୁ ବାହା ପଶିଲା ସେମାନଙ୍କର । ଗୋଟିଏ ଗୋଟିଏ ଅଞ୍ଚଳକୁ ନିଜ ଅଧିକାରକୁ ନେଇ କ୍ରମେ କ୍ରମେ ପୁରା ଭାରତଟାକୁ କବଳିତ କରିଗଲେ । ଦେଶଟା ତାଙ୍କ ଅଧୀନକୁ ଚାଲିଗଲା । ତାଙ୍କ କଥାରେ ଆମେ ବସିଲେ ଓ ତାଙ୍କ କଥାରେ ଆମେ ଉଠିଲେ । ତାଙ୍କ ଶାସନରେ ଆମେ ଶାସିତ ହେଲେ । ଆମ ସ୍ୱାଧୀନତା ସବୁଦିନ ପାଇଁ ହଜିଗଲା । ଆମେ ପରାଧୀନ ହୋଇଗଲେ ।

ସବୁଦିନ କ'ଣ ସମାନ ଯାଏ ! କ୍ରମେ ଭାରତୀୟ ମାନଙ୍କର ଆଖି ପୁଣି ଫିଟିଲା । ଇଂରେଜ ଶାସନର ଶୋଷଣ, ଅତ୍ୟାଚାର ଦେଖି ଭାରତୀୟଙ୍କ ମନରେ ଜାଗିଲା— " ସେମାନେ କିପରି ସ୍ୱାଧୀନ ହୁଅନ୍ତେ" । ମୁଖିଆ ମୁଖିଆ ଲୋକ ମାନେ ୧୮୮୫ ମସିହାରେ ବମ୍ବେର ତେଜ୍‌ପାଲ ସଂସ୍କୃତ କଲେଜରେ ବସି

"କଂଗ୍ରେସ" ଦଳ ଗଢ଼ିଲେ । ଏହାର ପ୍ରଥମ ସଭାପତି ହେଲେ ଉମେଶ ଚନ୍ଦ୍ର ବାନାର୍ଜି ।

ଦେଶରେ ଇଂରେଜ ଶାସନ ଥିବାରୁ ତାଙ୍କ ଦେଶର ଜାତୀୟ ପତାକା "ଇଉନିଅନ୍ ଜ୍ୟାକ୍" ଓ ଜାତୀୟ ସଂଗୀତ "ଭଗବାନ ରାଜା/ରାଣୀଙ୍କୁ ରକ୍ଷା କରନ୍ତୁ" (ଗଡ୍ ସେଭ୍ ଦି କିଙ୍ଗ/କୁଇନ୍) ଆମ ଉପରେ ଲଦି ଦେଇଥିଲେ । ତେଣୁ କଂଗ୍ରେସର ବାର୍ଷିକ ଅଧିବେଶନ ମାନଙ୍କରେ ପ୍ରଥମେ "ଇଉନିୟନ୍ ଜ୍ୟାକ୍" ଉତ୍ତୋଳିତ ହୋଇ ସଭାକାର୍ଯ୍ୟ ଚାଲୁଥିଲା । ଏ କଥା ଅନେକ ବିପ୍ଳବୀ ଭାରତୀୟମାନଙ୍କୁ ଜମା ସୁଖ ଲାଗିଲା ନାହିଁ । ଇଂରେଜ ସରକାରଙ୍କୁ ନିଜର ଶକ୍ତି ଦେଖାଇଦେବା ପାଇଁ ସେମାନେ ପ୍ରସ୍ତୁତ ହେଲେ । ୧୯୦୬ ମସିହାରେ ଏକ ପତାକା ପ୍ରସ୍ତୁତ କରି ସେହି ବର୍ଷ କଲିକତା କଂଗ୍ରେସ ଅଧିବେଶନରେ ଉତ୍ତୋଳନ କଲେ । ସେହି ପତାକାଟି ଏକ ତିନିରଙ୍ଗିଆ ପତାକା ଥିଲା ।




## ୧୯୦୬ ମସିହା ପତାକାର ନକ୍ସା

ଏହି ପତାକାରେ ତିନୋଟି ରଙ୍ଗ ଥିଲା । ସେଗୁଡ଼ିକ ହେଲା— ଲାଲ, ହଳଦିଆ ଓ ସବୁଜ । ଲାଲରଙ୍ଗଟି ଉପରେ ଥିଲା, ହଳଦିଆ ରଙ୍ଗଟି ମଝିରେ ଓ ତଳେ ସବୁଜ ରଙ୍ଗଟି ଥିଲା । ଲାଲ ରଙ୍ଗର ପଟିରେ ଆଠଟି ପଦ୍ମଫୁଲ ଥିଲାବେଳେ ତଳ ସବୁଜ ରଙ୍ଗର ବାମ ପାଖରେ ସୂର୍ଯ୍ୟ ଓ ଡାହାଣ ପଟରେ ବାଙ୍କୁଲି ଜହ୍ନ ଭିତରେ ଧଳା ତାରାଟିଏ ଥିଲା । ମଝି ହଳଦିଆ ପଟିଟି ଖାଲି ନଥିଲା ।

ତା' ଭିତରେ "ବନ୍ଦେ ମାତରମ୍" ଲେଖାଯାଇଥିଲା । ଦେବନାଗରୀ ଲିପିରେ ଗାଢ଼ ନୀଳ ରଙ୍ଗର କାଳିରେ ଏହା ଲେଖାଯାଇଥିଲା । ପତାକାଟି ଭାରତୀୟ କପଡ଼ାରେ ତିଆରି ହୋଇଥିଲା ।

## ପତାକାଟି ଏପରି ହେବାର କାରଣ

ଭାରତ ବର୍ଷରେ ହିନ୍ଦୁ ଲୋକ ମାନଙ୍କର ସଂଖ୍ୟା ଅଧିକ ହେଲେ ବି ମୁସଲମାନ୍ ମାନଙ୍କର ସଂଖ୍ୟା ସେତେଟା କମ୍ ନଥିଲା । ସ୍ୱାଧୀନତା ଆନ୍ଦୋଳନରେ ହିନ୍ଦୁ ଓ ମୁସଲମାନ୍ ମାନଙ୍କର ଅବଦାନ ଥିଲା । ନାଲିରଙ୍ଗ, ଓ ସୂର୍ଯ୍ୟ ହିନ୍ଦୁ ଧର୍ମର ଧର୍ମୀୟ ଭାବନା ସହ ଜଡ଼ିତ । ନିଜର ଧର୍ମ ଦେବତା ଭାବରେ ସୂର୍ଯ୍ୟ ଦେବତାଙ୍କୁ ହିନ୍ଦୁମାନେ ଆରାଧନା କରନ୍ତି । ସବୁଜ ରଙ୍ଗ ବାଙ୍କୁଲି ଚାନ୍ଦ ଓ ତାରା ତ ମୁସଲମାନ୍ ଧର୍ମର ପବିତ୍ର ସଙ୍କେତ । ତେଣୁ ଉଭୟ ଜାତି ମଧ୍ୟରେ ଏକତା ରକ୍ଷା କରିବା ପାଇଁ ଜାତୀୟ ପତାକାରେ ଏସବୁ ଖଞ୍ଜା ଯାଇଛି । ସେହି ସମୟ ବେଳକୁ ମୁସଲମାନ୍ ମାନେ ହିନ୍ଦୁ ମାନଙ୍କଠାରୁ ଦୂରେଇ ଯାଉଥିଲେ । କେତେକ ମୁସଲମାନ୍ ନେତା ମନ୍ଦ ଉଦ୍ଦେଶ୍ୟ ରଖି ସରଳ ମୁସଲମାନ୍ ମାନଙ୍କୁ ହିନ୍ଦୁ ମାନଙ୍କ ବିରୁଦ୍ଧରେ ମତାଉ ଥିଲେ । ତାଙ୍କ ମୁହଁ ବନ୍ଦ କରିଦେବା ପାଇଁ ଓ ଉଭୟ ଜାତି ମଧ୍ୟରେ ବନ୍ଧୁତା ସ୍ଥାପନ ପାଇଁ ୧୯୦୬ ମସିହାର ତ୍ରିରଙ୍ଗ ପତାକାରେ ଧର୍ମଭାବ ସଂଯୋଗ କରାଯାଇ ଥିଲା, ମାତ୍ର ପତାକାରେ "ବନ୍ଦେ ମାତରମ୍" ସଂଯୋଗର ଇତିହାସ ବଡ଼ ଗୁରୁତ୍ୱ ପୂର୍ଣ୍ଣ ।

## ତ୍ରିରଙ୍ଗ ପତାକାରେ "ବନ୍ଦେ ମାତରମ୍"ର ସଂଯୋଗ

"ବନ୍ଦେ ମାତରମ୍"ର ରାଜନୈତିକ ବ୍ୟବହାର ଆରମ୍ଭ ହୋଇଥିଲା ୧୯୦୫ ମସିହାରୁ ।

୧୯୦୫ ମସିହା ବେଳକୁ ଭାରତରେ ଯେଉଁ ବଡ଼ଲାଟ ଥିଲେ ତାଙ୍କ ନାମ ହେଉଛି ଲର୍ଡ଼ କର୍ଜନ୍ । ସେ ଭାରି ଗର୍ବୀ ବଡ଼ଲାଟ । ଭାରତୀୟ ମାନଙ୍କୁ ପୋକ ମାଛି ବୋଲି ବିଚାର କରୁଥିଲେ । କେବଳ ଇଂରେଜ ଜାତିଯେ ସଭ୍ୟ ଓ ଶିକ୍ଷିତ

ଏବଂ ଶାସନ କରିବାର ଏକ ଚାଟିଆ ଅଧିକାର ସେମାନଙ୍କର ହିଁ ରହିଛି, ଏହି ବିଶ୍ୱାସ ତାଙ୍କ ମନରେ ବସା ବାନ୍ଧି ଯାଇଥିଲା । ତାଙ୍କର ପରିହାସ ମୂଳକ ମନ୍ତବ୍ୟରେ ଭାରତୀୟମାନଙ୍କର ହୃଦୟ ମଚ୍ଛିହୋଇ ଯାଉଥିଲା ।

ସେ ଦେଖିଲେ ସାରା ପୂର୍ବ ଭାରତରେ ବଙ୍ଗାଳୀ ମାନେ ଅଧିକ ସଚେତନ । ଅନ୍ୟ ମାନଙ୍କ ମଧ୍ୟରେ ବଙ୍ଗାଳୀ ମାନଙ୍କ ସଂଖ୍ୟା ଅଧିକ । ତେଣୁ ବଙ୍ଗଳାକୁ ଦୁଇ ଭାଗ କରିଦେଲେ ବଙ୍ଗାଳୀଙ୍କର ଜାତୀୟତା, ଏକତା ପ୍ରଭୃତି ରହିବ ନାହିଁ, ଏକଥା ବିଚାରି କର୍ଜନ ସାହେବ ବଙ୍ଗ ପ୍ରଦେଶକୁ ଦୁଇଭାଗ କରିଦେଲେ । ପୂର୍ବ ବଙ୍ଗ ଓ ଆସାମକୁ ନେଇ ଆଉ ଏକ ପ୍ରଦେଶ କରିଦେଲେ । ଏଥିରେ ବଙ୍ଗାଳୀ ମାନେ ଅପମାନିତ ଅନୁଭବ କଲେ । ଜାଣି ଶୁଣି ସେମାନଙ୍କ ଏକତାକୁ ଭାଙ୍ଗି ଦିଆଯାଇଛି ବୋଲି ସେମାନେ ବିଶାସ କଲେ । ତେଣୁ ସୁରେନ୍ଦ୍ର ନାଥ ବାନାର୍ଜିଙ୍କ ନେତୃତ୍ୱରେ 'ବଙ୍ଗ ଭଙ୍ଗ' ବିରୋଧୀ ଆନ୍ଦୋଳନ ଚାଲିଲା । କଲିକତାରୁ ଅନ୍ୟ ସହର, ବଜାର ଏବଂ ପରେ ପରେ ପୁରପଲ୍ଲୀକୁ ବଙ୍ଗ ଭଙ୍ଗ ଆନ୍ଦୋଳନ ବ୍ୟାପିଲା ।

ଥରେ କଲିକତାର ନାରାୟଣଗଞ୍ଜରେ ବଙ୍ଗ ବିରୋଧି ସଭା ଚାଲିଥାଏ । ଶହ ଶହ ନରନାରୀ, ବାଳବୃଦ୍ଧ ସେ ସଭାରେ ଯୋଗଦେଇ ନେତା ମାନଙ୍କ ଆଗମନକୁ ଖୁବ୍ ଆଗ୍ରହରସହ ଅପେକ୍ଷା କରିଥାନ୍ତି । ସୁରେନ୍ଦ୍ର ନାଥ ବାନାର୍ଜି, ବିପିନ୍‌ଚନ୍ଦ୍ର ପାଲ ଓ ଅରବିନ୍ଦ ଘୋଷ ପ୍ରଭୃତି ତୁଙ୍ଗ ନେତୃବୃନ୍ଦଙ୍କୁ ଦେଖି ସଭା ମଧ୍ୟରୁ କେହିଜଣେ ହଠାତ୍ କହିଉଠିଲା — "ବନ୍ଦେ ମାତରମ୍" ! କି ଆଶ୍ଚର୍ଯ୍ୟ ! ତୁହାକୁ ତୁହା ଧ୍ୱନି ଉଠିଲା "ବନ୍ଦେ ମାତରମ୍ "। "ବନ୍ଦେ ମାତରମ୍ " ଧ୍ୱନିରେ ସଭାସ୍ଥଳ କମ୍ପିଉଠିଲା । ବାସ୍, ସେତିକି । ସେଇଠୁ "ବନ୍ଦେ ମାତରମ୍ " ବିଜୁଳୀ ବେଗରେ ସାରା ବଙ୍ଗଳାରେ ବ୍ୟାପିଗଲା ।

ଅବଶେଷରେ ୧୯୦୫ ମସିହା ଅକ୍ଟୋବର ୧୬ ତାରିଖରେ ବଙ୍ଗ ବିଭାଜନ ଆଇନ୍ ଲାଗୁ ହୋଇଗଲା । ବଙ୍ଗଳାରୁ ଚିଟାଗଙ୍ଗ୍, ରାଜସାହି, ଢ଼ାକା ଓ ଆସାମ ପୃଥକ ହୋଇ 'ପୂର୍ବବଙ୍ଗ' ଗଠିତ ହୋଇଗଲା । ସାର୍ ବାମ୍ଫିଲ୍‌ଡ

ଫୁଲାରଙ୍କୁ ଏହି ନୂତନ ପ୍ରଦେଶର ଛୋଟ ଲାଟ୍ ଭାବେ ନିଯୁକ୍ତି ଦିଆଗଲା । ସରକାରଙ୍କର ନିଷ୍ପତ୍ତିକୁ ବିରୋଧ କରି ବଙ୍ଗବାସୀ ଏହି ଦିନଟିକୁ ଶୋକଦିବସ ରୂପେ ପାଳନ କଲେ । ଅନେକ ବଙ୍ଗବାସୀ ଗଙ୍ଗାନଦୀରେ ଗାଧୋଇ ସେମାନଙ୍କର ଇଷ୍ଟଦେବୀ ମା' କାଳୀଙ୍କୁ ଦର୍ଶନ କଲେ । ଦିନକୁ ଦିନ ଆନ୍ଦୋଳନ ଜୋରଦାର ହେଲା । ସରକାର ପ୍ରମାଦ ଗଣିଲେ । ଆନ୍ଦୋଳନକୁ ଭଣ୍ଡୁର କରିବା ପାଇଁ ସରକାର ଦମନମୂଳକ ପନ୍ଥା ପ୍ରୟୋଗ କଲେ । ଦମନର ମାତ୍ରା ଯେତିକି ଅଧିକ ହେଉଥାଏ, ବଙ୍ଗାଳୀମାନେ ସେତିକି ଅଧିକ ଉତ୍ୟକ୍ତ ହେଉଥାନ୍ତି ।

''ସଂଯୁକ୍ତ ବଙ୍ଗଳା ସମ୍ମେଳନ'' ତରଫରୁ ବଙ୍ଗ ଭଙ୍ଗ ବିରୋଧି ଘୋଷଣାପତ୍ର ସରକାରଙ୍କୁ ପ୍ରଦାନ କରାଗଲା । ସଂଯୁକ୍ତ ବଙ୍ଗଳା ମୋହରରୁ ଜଣାଯାଏ ଯେ ଏହି ଘୋଷଣାପତ୍ର ୧୯୦୫ ମସିହା ନଭେମ୍ବର ୧ ତାରିଖରେ ସରକାରଙ୍କୁ ଦିଆଯାଇଥିଲା । ଦାଦାଭାଇ ନାରୋଜୀ, ମୋତିଲାଲ୍ ନେହେରୁ, ବାଲ୍ ଗଙ୍ଗାଧର ତିଲକ, ଲାଲ୍ ଲଜପତ୍ ରାଏ ପ୍ରଭୃତି ଜାତୀୟ ନେତାମାନେ ସରକାରଙ୍କ ଏହି ବିଭାଜନ ନୀତିରେ ଖୁବ୍ ଦୁଃଖିତ ହେଲେ । କଂଗ୍ରେସ ତାର ୧୯୦୫ କାଶୀ ଅଧିବେଶନ ଓ ୧୯୦୬ କଲିକତା ଅଧିବେଶନରେ ''ବଙ୍ଗ ଭଙ୍ଗ ବିରୋଧି'' ଆନ୍ଦୋଳନକୁ ସମର୍ଥନ କଲେ । ଫଳରେ ଏହି ଆନ୍ଦୋଳନ ବଙ୍ଗଳାର ସୀମା ଟପି ସାରା ଭାରତରେ ପ୍ରସାର ଲାଭ କଲାଏବଂ ସ୍ୱାଧୀନତା ଆନ୍ଦୋଳନକୁ ଆହୁରି ଜୋରଦାର କଲା ।

''ବନ୍ଦେ ମାତରମ'' ଧ୍ୱନି ସାରା ଭାରତରେ ଲୋକପ୍ରିୟତା ଅର୍ଜନ କଲା । ଗାନ୍‌ରେ 'ବନ୍ଦେ ମାତରମ୍', ସମ୍ଭାଷଣରେ 'ବନ୍ଦେ ମାତରମ୍ ', ଅଭିବାଦନରେ 'ବନ୍ଦେ ମାତରମ୍ ' — ଲୋକଙ୍କ କଣ୍ଠରେ ଖାଲି ବନ୍ଦେ ମାତରମ୍ । 'ବନ୍ଦେ ମାତରମ୍' ସ୍ୱାଧୀନତା ଆନ୍ଦୋଳନର ବୀଜମନ୍ତ୍ର ହୋଇଗଲା । ସ୍ୱଦେଶୀ ଆନ୍ଦୋଳନକୁ 'ବନ୍ଦେ ମାତରମ୍' ଅନ୍ଦୋଳନ କୁହାଗଲା । ସାରା ଦେଶରେ ବନ୍ଦେ ମାତରମ୍ ଆନ୍ଦୋଳନର ସୁଅ ଛୁଟିଲା । ବନ୍ଦେ ମାତରମ୍ ଏପରି ଲୋକପ୍ରିୟ ହୋଇଗଲା ଯେ ତାହା ତ୍ରିରଙ୍ଗ ପତାକାରେ ସାମିଲ ହୋଇଗଲା ।

ବଙ୍ଗ ଭଙ୍ଗ ଆନ୍ଦୋଳନର ପ୍ରତୀକ ରୂପେ ବନ୍ଦେ ମାତରମ୍‌କୁ ବକ୍ଷରେ ଧାରଣ କରି ୧୯୦୬ ମସିହା ଅଗଷ୍ଟ ୭ ତାରିଖରେ କଲିକତା ପାର୍ସିବାଗାନ୍ ସ୍କୋୟାରରେ ଉତ୍ତୋଳିତ ହେଲା । ପାର୍ସି ବାଗାନ୍ ସ୍କୋୟାରକୁ ଏବେ ଗ୍ରୀନ୍ ପାର୍କ ବୋଲି କୁହା ଯାଉଛି । ବଙ୍ଗଳାର ପ୍ରଖ୍ୟାତ ଦେଶପ୍ରେମୀ ବଙ୍କିମ ଚନ୍ଦ୍ର ଚଟ୍ଟୋପାଧ୍ୟାୟ —'ବନ୍ଦେ ମାତରମ୍' ମହାବାକ୍ୟଟିକୁ ଭାରତୀୟ ମାନଙ୍କୁ ପ୍ରଦାନ କରି ଅମର ହୋଇ ଯାଇଛନ୍ତି । ପରାଧୀନ ଭାରତ ବର୍ଷରେ ଏହାହିଁ ଜାତୀୟ ସଂଗୀତ ଥିଲା । ଏବେ ସ୍ୱାଧୀନ ଭାରତରେ ଏହା ଜାତୀୟ ଗୀତର ମାନ୍ୟତା ପାଇଛି ।

## ବନ୍ଦେ ମାତରମ୍

ବଙ୍ଗୀୟ ସାହିତ୍ୟିକ ବଙ୍କିମ୍ ଚନ୍ଦ୍ର ଚଟୋପାଧ୍ୟାୟ ୧୮୯୨ ମସିହାରେ "ଆନନ୍ଦ ମଠ" ନାମକ ଏକ ଉପନ୍ୟାସ ରଚନା କରିଥିଲେ । ଏହି ଉପନ୍ୟାସରେ ବନ୍ଦେ ମାତରମ୍ ଗୀତଟି ପରିବେଷଣ କରାଯାଇଥିଲା । ଦୁଇ ପଦ ବିଶିଷ୍ଟ ଏହା ଏକ ମାତୃ ବନ୍ଦନା । ତାହାର ପ୍ରଥମ ପଦଟି ହେଲା —

ବନ୍ଦେ ମାତରମ୍

ସୁଜଲାମ୍ ସୁଫଲାମ୍ ମଲୟଜ ଶୀତଲାମ୍
ଶସ୍ୟ ଶ୍ୟାମଲାମ୍ ମାତରମ୍
ବନ୍ଦେ ମାତରମ୍ ।
ଶୁଭ୍ର ଜ୍ୟୋତ୍ସ୍ନା ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଲ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାମ୍, ବରଦାମ୍, ମାତରମ୍,
ବନ୍ଦେ ମାତରମ୍ ।।

ଏଥିରେ ଜାତୀୟତା ବୋଧର ଭାବନା ଥିବାରୁ ବିଶ୍ୱକବି ରବିନ୍ଦ୍ରନାଥ ଠାକୁରଙ୍କ ସ୍ୱର ସଂଯୋଜନା ସହ ଏହାକୁ ୧୮୯୬ ମସିହା ବମ୍ବେ କଂଗ୍ରେସ ଅଧିବେଶନରେ ଗାନ କରାଯାଇ ଥିଲା ।

# ମାଡ଼ାମ ଭିକାଜୀ କାମାଙ୍କ ତ୍ରିରଙ୍ଗ ପତାକା

ସ୍ୱାଧୀନତା ଆନ୍ଦୋଳନ କାଳର କେତେକ ବିପ୍ଳବୀ ଓ ବିପ୍ଳବିନୀ ଭାରତରୁ ଖସିଯାଇ ପ୍ୟାରିସ୍‌ରେ ରହି ଆନ୍ଦୋଳନ ଚାଲୁ ରଖିଥିଲେ । ସେମାନଙ୍କ ମଧ୍ୟରୁ ‘‘ମାଡ଼ାମ୍ କାମା’’ ଜଣେ । ସେ ୧୮୬୧ ମସିହା ସେପ୍ଟେମ୍ବର ୨୪ ତାରିଖରେ ଜନ୍ମ ହୋଇଥିଲେ । ତାଙ୍କ ଜନ୍ମ ସ୍ଥାନହେଉଛି ବମ୍ବେ । ସେ ଜଣେ ପ୍ରଚଣ୍ଡ ବିପ୍ଳବିଣୀ । ସେ ରୁଷ୍, ଜର୍ମାନ୍, ଆୟରଲାଣ୍ଡ, ଆମେରିକା ଯାଇ ସେଠାରେ ବହୁସ୍ଥାନରେ ଭାରତରେ ଇଂରେଜ ଶାସନ କିପରି ଚାଲିଛି ତାହା ବଖାଣି ସରକାରଙ୍କୁ ସମାଲୋଚନା କରୁଥିଲେ ।

ସେ ସବୁବେଳେ କହୁଥିଲେ, ‘‘ଆମେ ଭାରତୀୟ । ଭାରତ ବର୍ଷ ଭାରତୀୟ ମାନଙ୍କ ପାଇଁ ।’’ ସେ ଦ୍ୱିତୀୟବାର ବିଦେଶ ମାଟିରେ ତ୍ରିରଙ୍ଗ ପତାକା ଉଡ଼ାଇଥିଲେ ୧୯୦୭ ମସିହାରେ । ଥରେ ଜର୍ମାନ୍ ଦେଶର ଇଷ୍ଟୁଟଗାର୍ଟ ନଗରୀରେ ଗୋଟିଏ ବଡ଼ ସମ୍ମିଳନୀ ହେଉଥିଲା । ଦେଶ ବିଦେଶରୁ ବହୁ ମାନ୍ୟ ଗଣ୍ୟ ଦେଶପ୍ରେମୀ ଏଥିରେ ଯୋଗ ଦେଇଥିଲେ । ମାଡ଼ାମ୍ କାମା ଫ୍ରାନ୍‌ସ୍‌ରୁ ଜର୍ମାନ୍ ଯାଇ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ସେ ମଞ୍ଚ ଉପରକୁ ଆସି କିଛି କହିବା ପୂର୍ବରୁ ଏକ ତ୍ରିରଙ୍ଗ ପତାକା ଉଡ଼ାଇ ଥିଲେ ।



୧୯୦୬ ମସିହାର ତ୍ରିରଙ୍ଗ ପତାକା ପରି ମାଡ଼ାମ୍ କାମାଙ୍କ ତ୍ରିରଙ୍ଗ ପତାକା-ରଙ୍ଗରେ ଓ ଆକାର ପ୍ରକାରରେ-ଦୁଇଟି ଯାକ ପତାକା ବିଲ୍‌କୁଲ୍ ସମାନ ପ୍ରାୟ । ମାତ୍ର ଟିକିଏ ପ୍ରଭେଦ ଥିଲା । ୧୯୦୬ ମସିହାର ଲାଲ ପଟିରେ ଆଠଟି ପଦ୍ମ ଫୁଲ ଥିବାବେଳେ ମାଡ଼ାମ୍ କାମାଙ୍କ ପତାକାରେ ସେହି ପଟିରେ ସାତୋଟି ଧଳା ତାରା ଥିଲା । ସେହି ସାତୋଟି ତାରା ହେଉଛନ୍ତି ସପ୍ତର୍ଷି ମଣ୍ଡଳ । ଏହାର ମଝି ହଳଦୀ ପଟିରେ ‘‘ବନ୍ଦେ ମାତରମ୍ ’’ ଲେଖାଥିଲା । ‘‘ବନ୍ଦେ ମାତରମ୍ ମହାବାକ୍ୟ’’- ସ୍ୱାଧୀନତା ବିପ୍ଳବୀ ମାନଙ୍କୁ ଦେଶପ୍ରେମର ସ୍ରୋତରେ ବୁଡ଼ାଇ ରଖିଥିଲା । ଏହି ପତାକା ୧୯୨୦ ମସିହା ପର୍ଯ୍ୟନ୍ତ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଜାତୀୟ ପତାକା ରୂପେ ସମ୍ମାନିତ ହେଉଥିଲା । ଅବଶ୍ୟ ୧୯୧୬ରେ ଆନି ବେସାନ୍ତଙ୍କ ଦୁଇରଙ୍ଗୀ ପତାକା ଓ ୧୯୧୭ ରେ ‘‘ଇଉନିଅନ୍ ଜ୍ୟାକ୍-ତ୍ରିରଙ୍ଗୀ ପତାକା’’ କିଛି ଦିନ ପାଇଁ ଭାରତୀୟ ଆକାଶରେ ଉଡ଼ିବାର ଗୌରବ ଲାଭ କରିଥିଲା ।

## ଡଃ ଆନି ବେସାନ୍ତଙ୍କ ଦୁଇରଙ୍ଗୀ ପତାକା

ଇଂରେଜ ସରକାରଙ୍କ ବିରୋଧରେ ଇଂରେଜ ମହିଳାଙ୍କ ବିପ୍ଳବ କଥା ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ । ହଁ, ଘଟଣାଟି ସତ । ଜଣେ ଇଂରେଜ ମହିଳା ହେଉଛନ୍ତି ଆନି ବେସାନ୍ତ । ସେ ଭାରତକୁ ଭଲପାଇ ବସିଲେ । ପରାଧୀନ ଭାରତ ବର୍ଷକୁ ଇଂରେଜ ଶାସନ ହାତରୁ ଛଡ଼େଇ ଆଣିବାକୁ ସେ ବିପ୍ଳବିନୀ ସାଜିଲେ । ବିପ୍ଳବୀ ରେମଣ୍ଡ୍‌ଙ୍କ ନେତୃତ୍ୱରେ ବ୍ରିଟେନ୍ ବିରୁଦ୍ଧରେ ଆୟାରଲାଣ୍ଡ୍ ‘‘ସ୍ୱଦେଶୀ ଅନ୍ଦୋଳନ’’ ତାଙ୍କୁ ଗଭୀରଭାବେ ପ୍ରଭାବିତ କଲା । ସେହି ରୀତିରେ ସେ ଭାରତରେ ସ୍ୱଦେଶୀ ଆନ୍ଦୋଳନ ଆରମ୍ଭ କଲେ । ବାଲ୍ ଗଙ୍ଗାଧର ତିଲକ୍ ତାଙ୍କ ସ୍ୱଦେଶୀ ଆନ୍ଦୋଳନରେ ସାମିଲ୍ ହେଲେ । ଉଭୟେ ଥିଲେ କଂଗ୍ରେସର ଟାଣୁଆ ନେତା । ତାଙ୍କ ନେତୃତ୍ୱରେ ମାନ୍ଦ୍ରାଜ, ଓ ମହାରାଷ୍ଟ୍ରରେ ସ୍ୱଦେଶୀ ଆନ୍ଦୋଳନ ଅସମ୍ଭବ ଭାବେ ଅଗ୍ରଗତି କରିଥିଲା ।

ସେହି ସମୟରେ ୧୯୧୬ ମସିହାରେ କଂଗ୍ରେସ ଓ ମୁସଲିମ୍ ଲିଗ୍‌ର ବାର୍ଷିକ ସମ୍ମିଳନୀ ଲକ୍ଷ୍ନୌଠାରେ ଅନୁଷ୍ଠିତ ହୋଇଥିଲା । କଂଗ୍ରେସ ଓ ଲିଗ୍ ମଧ୍ୟରେ

ବନ୍ଧୁତା ସ୍ଥାପିତ ହୋଇଥିଲା । ହିନ୍ଦୁ - ମୁସଲିମ୍ ଭାଇ ଭାଇ ଭଳି ଚଳିଲେ । ପୁଣି ଏହିଠାରେ ଉଦାର ପନ୍ଥୀ ନେତାଗଣ ଓ ଉଗ୍ରପନ୍ଥୀ ନେତାଗଣ ପରସ୍ପର ସହିତ ଭାଇଭାବ ଦେଖାଇ ମିଶିଗଲେ । ଫଳରେ ଅଭୂତପୂର୍ବ ଜାତୀୟ ଏକତା ପ୍ରକାଶ ପାଇଲା । ଏଥିରେ ପ୍ରଭାବିତ ହୋଇ ଆନି ବେସାନ୍ତ ମୁସ୍‌ଲିମ୍ ଧର୍ମର ପବିତ୍ର ସବୁଜରଙ୍ଗ ଓ ହିନ୍ଦୁ ଧର୍ମର ପବିତ୍ର ଲାଲରଙ୍ଗକୁ ନେଇ ଦୁଇରଙ୍ଗୀ ଜାତୀୟ ପତାକା ପ୍ରସ୍ତୁତ କଲେ । ଉକ୍ତ ପତାକାରେ ଚାରୋଟି ସବୁଜ ପଟି ଓ ପାଞ୍ଚୋଟି ଲାଲ ପଟି ଆନୁଭୂମିକ ଭାବରେ ସଜାହୋଇଥିଲା ।

ମାତ୍ର ଉକ୍ତ ପତାକା ଭାରତ ମାଟିରେ ବେଶୀଦିନ ତିଷ୍ଠି ରହିପାରି ନଥିଲା । ୧୯୧୭ ମସିହାରେ ପୁଣି ତ୍ରିରଙ୍ଗ ପତାକା ଭାରତର ଜାତୀୟ ପତାକା ରୂପେ ବ୍ୟବହୃତ ହେଲା । ଆନି ବେସାନ୍ତଙ୍କ ବଳିଷ୍ଠ ନେତୃତ୍ୱ ଓ ସ୍ୱଦେଶୀ ଆନ୍ଦୋଳନର ଅଭୁତପୂର୍ବ ସଫଳତା ଯୋଗୁଁ ସେ ଖୁବ୍ ଲୋକ ପ୍ରିୟତା ଅର୍ଜନ କରିଥିଲେ ।ତେଣୁ ସେ ୧୯୧୭ ମସିହା କଲିକତା କଂଗ୍ରେସ ଅଧିବେଶନରେ ସଭାପତିତ୍ୱ କରିବା ପାଇଁ ନିର୍ବାଚିତ ହୋଇଥିଲେ । ଏହି ଅଧିବେଶନରେ ମୋଟ୍ ୪୯୬୭ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ଏହି ଅଧିବେଶନରେ ତ୍ରିରଙ୍ଗ ପତାକା କଂଗ୍ରେସର ନିଶାଣ ରୂପେ ରହିବ ବୋଲି ପ୍ରସ୍ତାବ ଗୃହୀତ ହୋଇଥିଲା ।

ସେତେବେଳେ କଂଗ୍ରେସର ପତାକାକୁ ଦେଶର ଜାତୀୟ ପତାକା ବୋଲି ଗ୍ରହଣ କରାଯାଉଥାଏ । ୧୯୧୭ ମସିହା ତ୍ରିରଙ୍ଗ ପତାକାର ଏକ ସ୍ୱତନ୍ତ୍ରତା ରହିଥିଲା । ତାହା ହେଲା ତ୍ରିରଙ୍ଗ ପତାକାରେ ବ୍ରିଟେନ୍‌ର ଜାତୀୟ ପତାକା 'ଇଉନିୟନ୍ ଜ୍ୟାକ୍' ର ସଂଯୋଗ ।

## ପତାକାର ନକ୍ସା

ଏହି ପତାକାରେ ଉପରୁ ତଳ କ୍ରମରେ ନାଲି ,ହଳଦୀ ଓ ନେଳୀପଟି ଥିଲା । ଉପର ନାଲି ପଟିର ବାମ ପାଖ କୋଣରେ ବ୍ରିଟେନ୍‌ର ଜାତୀୟ ପତାକା ''ଇଉନିଅନ୍ ଜ୍ୟାକ୍'' ସ୍ଥାନ ପାଇଲା । ସେଥିରେ ଥିବା ଧଳା ତାରକା ଉଠିଗଲା । ମଝି ହଳଦୀ ପଟିରେ ଘନ ନୀଳ ଅକ୍ଷରରେ ''ବନ୍ଦେ ମାତରମ୍ '' ଲେଖା ରହିଲା ।




ଏହା ଦେବ ନାଗରୀ ଲିପିରେ ଲିଖିତ । ତଳ ସବୁଜ ପଟିର ଡାହାଣ ପାର୍ଶ୍ୱରେ ଦ୍ୱିତୀୟା ଜହ୍ନ ମଧ୍ୟରେ ଗୋଟିଏ ଧଳା ତାରା ଥିଲା । ମାତ୍ର ବାମ ପାର୍ଶ୍ୱରେ ସୂର୍ଯ୍ୟ ନଥାଇ ସେହି ସ୍ଥାନରେ ସାତୋଟି ତାରା ରହିଥିଲେ ।

## ତ୍ରିରଙ୍ଗ ପତାକାରେ ଇଉନିୟନ୍ ଜ୍ୟାକ୍‌ର ସଂଯୋଗ

ସ୍ୱଦେଶୀ ଆନ୍ଦୋଳନର ସୁଅ ଛୁଟିଥାଏ ଦେଶରେ । ତିଲକ୍ ଓ ବେସାନ୍ତ୍ ତାର ଦୁଇ ସୁଦକ୍ଷ ମଙ୍ଗୁଆଳ ଥାନ୍ତି । କଂଗ୍ରେସ-ଲିଗ୍ ଲକ୍ଷ୍ନୌ ଚୁକ୍ତି ଯୋଗୁଁ ଓ କଂଗ୍ରେସର ଦୁଇଗୋଷ୍ଠୀ ମଧ୍ୟରେ ମିଳାମିଶା ହୋଇଯାଇ ଥିବାରୁ ଆନ୍ଦୋଳନର ଗତି ବଢ଼ିଥାଏ । ବ୍ରିଟେନ୍ ସାମ୍ରାଜ୍ୟରେ ରହି ଅଷ୍ଟ୍ରେଲିଆ ଓ କାନାଡ଼ା ଯେପରି ପୂର୍ଣ୍ଣ ସ୍ୱାୟତ୍ତ ଶାସନ ଉପଭୋଗ କରୁଛନ୍ତି ସେହିଭଳି ସ୍ୱାୟତ୍ତ ଶାସନ ଅଧିକାର ପାଇବା କଂଗ୍ରେସର ଲକ୍ଷ୍ୟଥାଏ । ଇଂରେଜ ଶାସନ ପ୍ରତି ଭାରତୀୟ ମାନଙ୍କର ପ୍ରବଳ ଘୃଣା ଓ ଅସନ୍ତୋଷ ସୃଷ୍ଟି ହୋଇଥିଲା, ମାତ୍ର ବଳ, କଳ, କୌଶଳ, ପ୍ରୟୋଗ କରି ଇଂରେଜ ସରକାରକୁ ଦେଶରୁ ତଡ଼ି ଦେବାର ଭାବନା ଭାରତୀୟଙ୍କ ଠାରେ ଉଦ୍ରେକ ହୋଇନଥାଏ ।

ତେଣୁ ପୂର୍ଣ୍ଣ ସ୍ୱାଧୀନତା ଦାବି କରିବା ବଡ଼ ବଡ଼ ନେତା ଗଣ ଚିନ୍ତା କରୁନଥିଲେ । ଅତଏବ ''ପୂର୍ଣ୍ଣ ସ୍ୱାଧୀନତା'' ଦାବୀ ବଦଳରେ ପୂର୍ଣ୍ଣ ସ୍ୱାୟତ୍ତ

ଶାସନଦାବି କରାଯାଉଥାଏ । ଏତିକି ବେଳକୁ ପ୍ରଥମ ବିଶ୍ୱଯୁଦ୍ଧ ଲାଗିଯାଇଥିଲା । ବ୍ରିଟେନ୍ ଏହି ଯୁଦ୍ଧରେ ସଂପୃକ୍ତ ହୋଇଯାଇଥିଲା । ଇଂଲଣ୍ଡର ଏହି ବିପତ୍ତି ସମୟରେ ସେ ଭାରତୀୟ ମାନଙ୍କୁ ଉତ୍ତେଜିତ କରିବାକୁ ଚାହୁଁ ନଥିଲେ । ଲର୍ଡ଼ ଚେମ୍ବର୍‌ଲିନ୍‌ଙ୍କ ସ୍ଥାନରେ ଲର୍ଡ଼ ମଣ୍ଟେଗୁ ଭାରତ ଶାସନ ସଚିବ ନିଯୁକ୍ତ ହେଲେ । ଯୁଦ୍ଧ ସରିଲା ପରେ ଭାରତୀୟଙ୍କୁ ପୂର୍ଣ୍ଣ ସ୍ୱାୟତ୍ତ ଶାସନ କ୍ଷମତା ଦିଆଯିବ ବୋଲି ସେ ଘୋଷଣା କଲେ ।

ପୂର୍ଣ୍ଣ ସ୍ୱାୟତ୍ତ ଶାସନ ଦାବିକୁ 'ଡୋମିନିୟନ୍ ଷ୍ଟାଟସ୍' ବୋଲି କୁହାଯାଉଥିଲା । ଯୁଦ୍ଧ ସରିଗଲା ପରେ ଡୋମିନିୟନ୍ ଷ୍ଟାଟସ୍ ମିଳିଯିବା ଆଶାରେ ଭାରତୀୟ ନେତୃମଣ୍ଡଳୀ ଆଶ୍ୱସ୍ତି ଲାଭ କରୁଥିଲେ । ୧୯୧୭ ବେଳକୁ ଜାତୀୟ ନେତୃମଣ୍ଡଳୀ ଓ ଇଂରେଜ ସରକାର ମଧ୍ୟରେ ଏକ ହାଲୁକା ସମୟ ଥାଏ । ''ବ୍ରିଟେନ୍ ଅଧୀନରେ ରହି ଡୋମିନିଅନ୍ ଷ୍ଟାଟସ୍'' କଂଗ୍ରେସର ଲକ୍ଷ୍ୟ ତ୍ରିରଙ୍ଗ ପତାକାରେ ପ୍ରତିଫଳିତ ହେଲା । ତେଣୁ 'ତ୍ରିରଙ୍ଗ ପତାକା' ଭିତରେ ଇଉନିଅନ୍ ଜ୍ୟାକ୍ ସ୍ଥାନ ପାଇଥିଲା ।

ଯାହାହେଲେ ବି ଉକ୍ତ ପତାକା ବ୍ରିଟେନ୍ ପ୍ରତି ଭାରତର ଆନୁଗତ୍ୟ ପ୍ରକାଶ କରେ । ଏଭଳି ଏକ ଖୋସାମତିଆ ପତାକା ଭାରତ ମାଟିରେ, ଭାରତୀୟଙ୍କ ହୃଦୟରେ ବେଶୀକାଳ କ'ଣ ତିଷ୍ଠିରହି ପାରିଥାନ୍ତା ? ସେତିକି ବେଳକୁ ମୋହନଦାସ କରମଚାନ୍ଦ ଗାନ୍ଧୀ ଭାରତୀୟ ରାଜନୀତିରେ ପ୍ରବେଶ କଲେ । ସୂର୍ଯ୍ୟଙ୍କ କୀରଣ ପଡ଼ିବା ମାତ୍ରକେ କୁହୁଡ଼ି ଉଭେଇ ଗଲା ପରି ଗାନ୍ଧିଜୀଙ୍କ ଆଗମନ ଫଳରେ ଭାରତୀୟ ସ୍ୱାଧୀନତା ସଂଗ୍ରାମରୁ ଅନେକ କାଳିମା ଉଭେଇ ଗଲା । ତା ସହିତ 'ଇଉନିଅନ୍ ଜ୍ୟାକ୍— ତ୍ରିରଙ୍ଗ ପତାକା' ଭାରତ ମାଟିରୁ ଚିରଦିନ ପାଇଁ ଲୁଚିଗଲା ।

## ଗାନ୍ଧି ଯୁଗର ତ୍ରିରଙ୍ଗ ପତାକା

ଲୋକମାନ୍ୟ ବାଲ୍ ଗଙ୍ଗାଧର ତିଲକଙ୍କ ତିରୋଧାନ ଓ ପ୍ରଥମ ବିଶ୍ୱ ଯୁଦ୍ଧର ଘନଘଟା ଯୋଗୁଁ ଭାରତରେ ସ୍ୱାଧୀନତା ଆନ୍ଦୋଳନର ବେଗ ଶିଥିଳ ହୋଇ ପଡ଼ିଲା । ଆନ୍ଦୋଳନର ଅଗ୍ନି ଲିଭିଯିବାକୁ ବସିଲା । ଏତିକିବେଳେ ଭାରତର

ରାଜନୈତିକ ଆକାଶରେ ଗାନ୍ଧିଜୀଙ୍କର ଆବିର୍ଭାବ ହେଲା । ଏହା ପୂର୍ବରୁ ସେ ଦକ୍ଷିଣ ଆଫ୍ରିକାରେ ରହି ସତ୍ୟାଗ୍ରହ ଆନ୍ଦୋଳନ ଦ୍ୱାରା ଭାରତ ତଥା ଏସୀୟ ଲୋକ ମାନଙ୍କର ବହୁତ ଉପକାର କରିଥିଲେ । ଗାନ୍ଧିଜୀଙ୍କ 'ସତ୍ୟାଗ୍ରହ ଆନ୍ଦୋଳନ' ସେତେବେଳେ ନୂଆ ଥିଲା । ତେଣୁ ତାହା ପୃଥିବୀରେ ଖୁବ୍ ଚହଳ ପକାଇ ଥିଲା । ସେ ପୃଥିବୀ ପ୍ରସିଦ୍ଧ ହୋଇଯାଇଥିଲେ । ଗାନ୍ଧିଜୀ ଭାରତରେ ୧୯୧୫ ମସିହାରେ ପହଞ୍ଚିଲେ । ଗୋପାଳ କୃଷ୍ଣ ଗୋଖଲେଙ୍କ ଉପଦେଶ ମାନି ସେ ସାରା ଭାରତ ବୁଲି ଲୋକଙ୍କୁ ଜାଣିଲେ ।



ଶାନ୍ତିନିକେତନରୁ ବିଶ୍ୱକବି ରବିନ୍ଦ୍ରନାଥ ଠାକୁର ତାଙ୍କୁ 'ମହାତ୍ମା' ବୋଲି ଡାକିଲେ । ତାଙ୍କର କାଉଁରୀ ପରଶରେ ଭାରତୀୟ ମାନଙ୍କ ଜାତୀୟ ଚେତନା ଓ ଚିନ୍ତାଧାରା ଉନ୍ନତ ହେଲା । ଲିଭିଯିବାକୁ ବସିଥିବା ସ୍ୱାଧୀନତା ସଂଗ୍ରାମ ପୁଣି ଜଳି ଉଠିଲା । ସଂଗ୍ରାମର ନୀତି, ଗତି, ଓ ଲକ୍ଷ୍ୟ ସୁନିର୍ଦ୍ଦିଷ୍ଟ ହେଲା । ସେ ହେଲେ ସ୍ୱରାଜ ଯଜ୍ଞର ମୁଖ୍ୟ ପୁରୋହିତ । ୧୯୨୦ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ଦୀର୍ଘ ୨୮ ବର୍ଷ ଧରି ସେ ମୁକ୍ତିକାମୀ ଆନ୍ଦୋଳନକାରୀ ମାନଙ୍କର ପଥ ପ୍ରଦର୍ଶକ ଓ ଆନ୍ଦୋଳନର ପୁରୁଷ ଅଗ୍ରୁଆଳ । ତାଙ୍କ ନିଖୁଣ ନିର୍ଦ୍ଦେଶନାରେ ଭାରତୀୟ ଜାତୀୟ ସଂଗ୍ରାମ-ନାଟକର ବିଭିନ୍ନ ଅଙ୍କ ଅତି ସଫଳତାର ସହ ଅଭିନୀତ ହେଲା ।

ପ୍ରଥମ ଅଙ୍କରେ ୧୯୨୦ ମସିହାର ଅସହଯୋଗ ଆନ୍ଦୋଳନ ଓ ସତ୍ୟ, ଅହିଂସା ସତ୍ୟାଗ୍ରହର ଚମକ ପ୍ରଦ ପ୍ରୟୋଗ, ଦ୍ୱିତୀୟ ଅଙ୍କରେ ୧୯୩୦ ମସିହାର

ଲବଣ ଆଇନ ଉଲଙ୍ଘନ ଓ ୩୮୫ କି.ମି. ଦାଣ୍ଡି ପଦଯାତ୍ରା ତୃତୀୟ ଅଙ୍କରେ ୧୯୪୦ ମସିହାର ବ୍ୟକ୍ତିଗତ ସତ୍ୟାଗ୍ରହ ଓ ୬୦ ହଜାର ସତ୍ୟାଗ୍ରହୀଙ୍କର ଜେଲ୍‌ଦଣ୍ଡ, ଚତୁର୍ଥ ଅଙ୍କରେ ୧୯୪୨ ମସିହାର ଭାରତଛାଡ଼ ଆନ୍ଦୋଳନ ଓ ''କର ଅବା ମର''ର ମନ୍ତ୍ର, ପଞ୍ଚମ ଅଙ୍କରେ ୧୯୪୬ ମସିହାର ଜିନ୍ନାଙ୍କ ପ୍ରତ୍ୟକ୍ଷ ଯୁଦ୍ଧ ଓ ୬ ହଜାର ହିନ୍ଦୁଙ୍କ ମୃତ୍ୟୁ, ଶେଷ ଅଙ୍କରେ ଅହିଂସାର ଅବତାର ୭୯ ବର୍ଷ 'ଲଙ୍ଗଳା–ଫକୀର ବୁଢ଼ାର' ଗୁଳିବିଦ୍ଧ ରକ୍ତ ଜୁଡୁବୁଡୁ ଶରୀର ଦେଖି ପୃଥିବୀର ଦର୍ଶକ ମଣ୍ଡଳୀ କାନ୍ଦି ପକାଇଥିଲେ ।

୧୯୨୦ ମସିହାରେ ଗାନ୍ଧିଜୀ ଦେଶବାସୀଙ୍କୁ ଅସହଯୋଗ ଆନ୍ଦୋଳନର ଡାକରା ଦେଲେ । ସେ ଲୋକଙ୍କୁ ବୁଝାଇଲେ କେହି ଇଂରେଜ ସରକାରୀ ଅଫିସ୍, କୋର୍ଟ, କଚେରୀରେ କାର୍ଯ୍ୟ ନକରି ଚାକିରି ଛାଡ଼ିଦିଅ, ଛାତ୍ରଛାତ୍ରୀ ମାନେ ସରକାରୀ ସ୍କୁଲ କଲେଜ ଛାଡ଼ିଦିଅ, ସରକାରୀ ଉପାଧି ସରକାରଙ୍କୁ ଫେରାଇ ଦିଅ । ସ୍ୱଦେଶୀ ଜିନିଷ ପତ୍ର ବ୍ୟବହାର କର ଓ ସ୍ୱଦେଶୀ ଖଦୀଲୁଗା ବୁଣ ଓ ପିନ୍ଧ । ''କୁଟି ଖାଇଲେ–କାଟି ପିନ୍ଧିଲେ'' ଇଂରେଜ ସରକାର ଏ ଦେଶରେ ରହିପାରିବ ନାହିଁ, ଦେଶ ଛାଡ଼ି ପଳାଇବ ।

ଗାନ୍ଧିଜୀ ଅହମଦାବାଦ (ଗୁଜୁରାଟ) ସହର ନିକଟସ୍ଥ ସାବରମତୀ ନଦୀ କୂଳରେ ସାବରମତୀ ଆଶ୍ରମ ପ୍ରତିଷ୍ଠା କରିଥିଲେ । ଗାନ୍ଧିଜୀଙ୍କ କହିବା ଅନୁସାରେ ଆଶ୍ରମବାସୀ ସୂତା କାଟିବାକୁ ଚାହିଁଲେ, ମାତ୍ର ଚରଖା ନଥିଲା । ୧୯୧୫ ମସିହା ଯାଏ ଗାନ୍ଧିଜୀ ନିଜେ ମଧ୍ୟ ଚରଖା ଦେଖି ନଥିଲେ । ଗଙ୍ଗା ବହେନ୍ ମଜୁମ୍‌ଦାର ବିଜାପୁର ସହରରୁ ଚରଖା ଯୋଗାଡ଼ କରି ଗାନ୍ଧିଜୀଙ୍କୁ ଦେଲେ । ମଗନ ଲାଲ ଗାନ୍ଧି ଚରଖାର ଅଶେଷ ଉନ୍ନତି ବିଧାନ କଲେ । କ୍ରମେ କ୍ରମେ ଚରଖାର ପ୍ରଚାର ଘଟିଲା । ଗାନ୍ଧିଜୀ ଯେଉଁ ଆଡ଼େ ଗଲେ ଚରଖାରେ ସୂତା କାଟି ଖଦୀ ବୁଣିବାକୁ ଲୋକଙ୍କୁ କହିଲେ ।

ସୂତାକାଟିବାକୁ ଜୋର୍‌ଦେବା ମୂଳରେ ଗୋଟିଏ କାରଣ ଥିଲା । ସେତେବେଳକୁ ବ୍ରିଟେନ୍‌ରୁ ଭାରତକୁ ବର୍ଷକୁ ପ୍ରାୟ ଷାଠିଏ କୋଟି ଟଙ୍କାର ଲୁଗା ଆସୁଥିଲା । ମାତ୍ର ଶସ୍ତା ଦରରେ ଭାରତରୁ ତୁଳା ବ୍ରିଟେନକୁ ଯାଉଥିଲା ।

ଇଂରେଜଙ୍କ ଏହି ଲୁଗା ବେପାର ବନ୍ଦ ହୋଇଗଲେ ସୁବିଧାରେ ସ୍ୱରାଜ ମିଳିଯିବ ବୋଲି ଗାନ୍ଧିଜୀ ଭାବୁଥିଲେ । ତେଣୁ ସେ ନିଜେ ଚରଖାରେ ସୂତାକାଟି ସେଇ ସୂତାରେ ବୁଣା 'ଖଦୀ' ପିନ୍ଧିଲେ । ତାଙ୍କୁ ଦେଖି ସବୁ ସତ୍ୟାଗ୍ରହୀ, ସବୁ କଂଗ୍ରେସ ନେତା, ଓ ଜନସାଧାରଣ ମଧ ଚରଖାରେ ସୂତା କାଟିବା ଆରମ୍ଭ କରିଦେଲେ ।

ଚାହୁଁ ଚାହୁଁ ଦେଶସାରା କୋଡ଼ିଏ ହଜାର ଚରଖା ଘୂରିଲା । ଏହି ବର୍ଷଠାରୁ ଗାନ୍ଧିଜୀ ତାଙ୍କ ଗୁଜରାଟୀ ବେଶ ପରିତ୍ୟାଗ କଲେ । କୁଞ୍ଚ ଲମ୍ବାଇ ଖଦୀ ପିନ୍ଧିବା, ଖଦୀ କମିଜ୍ (ସାର୍ଟ) ପିନ୍ଧିବା, ମୁଣ୍ଡରେ ପଗଡ଼ି ବାନ୍ଧିବା ଛାଡ଼ିଦେଲେ । ଆଣ୍ଠୁ ନଲୁଚା ଖଦୀ ମାତ୍ର ପିନ୍ଧିଲେ , ଦେହରେ ଏକ ଖଦଡ଼ ଚଦର ପକାଇଲେ । ଏଥର ଗାନ୍ଧିଜୀ ଜଣେ ସଚ୍ଚା ଭାରତୀୟ କୃଷକ ପରି ଦିଶିଲେ । ଗାନ୍ଧିଜୀଙ୍କର ଏହି ନୂଆ ରୂପ ଦେଖି ଇଂରେଜ ସରକାର ଚମକି ପଡ଼ିଲେ ।

୧୯୨୧ ମସିହାରେ ଆନ୍ଧ୍ର ପ୍ରଦେଶର ବିଜୱାଡ଼ା ଠାରେ କଂଗ୍ରେସ କମିଟୀର ସଭା ବସିଥାଏ । ସେଠାକାର ଜଣେ ଯୁବ ସତ୍ୟାଗ୍ରହୀ ହେଲେ ଭେଙ୍କିହା ନାଇଡୁ । ସେ ଗାନ୍ଧିଜୀଙ୍କୁ ଏକ ଦୁଇ ରଙ୍ଗୀ ପତାକା ପ୍ରଦାନ କରିଥିଲେ । ସବୁଜ ଓ ନାଲି ରଙ୍ଗର ପଟିଥିବା ପତାକାଟି ମୁସଲମାନ ଓ ହିନ୍ଦୁ ଏକତାକୁ ବୁଝାଉଥିଲା । ଏହା ଦେଖି ଗାନ୍ଧିଜୀ ଗମ୍ଭୀର ହୋଇଗଲେ । ଅନ୍ୟ ସଂଖ୍ୟାଲଘୁ ଜାତି ଓ ଗୋଷ୍ଠୀ ମାନଙ୍କୁ ଉପଯୁକ୍ତ ସମ୍ମାନ ଜାତୀୟ ପତାକାରେ ପ୍ରଦାନ କରାଯାଇ ନଥିବାରୁ ସେ ଦୁଃଖିତ ହେଲେ ।

ସଂଖ୍ୟାଲଘୁ ଜାତିର ପ୍ରତୀକ ସ୍ୱରୂପ ଧଳାରଙ୍ଗର ପଟି ପତାକାରେ ବ୍ୟବହାର କରିବାକୁ ସେ ଭେଙ୍କିହା ନାଇଡୁଙ୍କୁ ଉପଦେଶ ଦେଲେ । ପତାକା ମଧ୍ୟଭାଗରେ 'ଚରଖା' ରଖିବାକୁ ମଧ କହିଲେ । ସେହି ଅନୁସାରେ ଭେଙ୍କିହା ତ୍ରିରଙ୍ଗ ପତାକାଟି ପ୍ରସ୍ତୁତ କରି ଗାନ୍ଧିଜୀଙ୍କୁ ଦେଲେ । ତାହାହେଲା ଦେଶର ଜାତୀୟ ପତାକା ।

## ପତାକାର ନକ୍ସା

ଏହି ତ୍ରିରଙ୍ଗ ପତାକାଟିରେ ଉପରେ ଧଳା, ମଝିରେ ସବୁଜ ଓ ତଳେ ନାଲି ପଟି ରହିଲା । ମଝି ସବୁଜ ପଟିରେ ଚରଖା ଚିହ୍ନ ସ୍ଥାନିତ ହେଲା । ବନ୍ଦେ

ମାତରମ୍, ସୂର୍ଯ୍ୟ, ବାଙ୍କୁଲୀ ଚାନ୍ଦ ଓ ତାରା ପ୍ରଭୃତି ଆଉ ତ୍ରିରଙ୍ଗ ପତାକାରେ ବ୍ୟବହୃତ ହେଲା ନାହିଁ ।




ତ୍ରିରଙ୍ଗ ପତାକାଟି ଖଦୀ କପଡ଼ାରେ ପ୍ରସ୍ତୁତ ହେଲା —

## ଅସହଯୋଗ ଆନ୍ଦୋଳନ ଓ ଖଦୀର ଜନ୍ମ

ପ୍ରଥମେ ପ୍ରଥମେ ଗାନ୍ଧିଜୀ ଇଂରେଜ ମାନଙ୍କର ସଚ୍ଚୋଟ ପଣିଆକୁ ଖବ୍ ଭଲପାଉଥିଲେ । ମାତ୍ର ତିନି ଚାରୋଟି ଘଟଣାରୁ ତାଙ୍କର ଏହି ଧାରଣା ବେଶୀଦିନ ରହିଲା ନାହିଁ ।

ଚମ୍ପାରନ୍ ବିହାରର ଏକ ଅଞ୍ଚଳ । ଏହା ନୀଳଚାଷ ପାଇଁ ଖ୍ୟାତ । ଏଠାକାର ଜମିଦାର ମାନେ ହେଲେ ଇଂରେଜ । ସେମାନେ ଭାଗଚାଷପାଇଁ ଭାରତୀୟ ଚାଷୀ ମାନଙ୍କୁ ଜମି ଦିଅନ୍ତି । ଚମ୍ପାରନ୍ ରେ ପ୍ରଚଳିତ ‘‘ତିନି କାଠିଆ’’ ପଦ୍ଧତି ଅନୁସାରେ ଆୟର ତିନି ଭାଗରୁ ଭାଗେ ‘‘କର’’ ଆକାରରେ

ଜମିଦାରଙ୍କୁ ଦେବାକୁ ପଡ଼େ । ନୀଳଚାଷ ବ୍ୟୟ ବହୁଳ । ହେଲେ ମଧ୍ୟ ଚୁକ୍ତି ଅନୁଯାୟୀ ଚମ୍ପାରନ୍‌ର ଚାଷୀ ନୀଳଚାଷ କରିବାକୁ ବାଧ୍ୟ । ଅନ୍ୟ ଫସଲ ଅପେକ୍ଷା ଏହା ଅଧିକ ଲାଭ ଜନକ, ହେଲେ 'କର' ଆକାରରେ ସବୁତକ ନୀଳ ଜମିଦାରଙ୍କୁ ଦେବାକୁ ବାଧ୍ୟ । ଏହି 'ଚାଷୀ ଶୋଷଣ ନୀତି' ଦେଖି ଗାନ୍ଧିଜୀ ଖୁବ୍ ଦୁଃଖ କଲେ ।

ସେତେବେଳେ ସରକାର ଗୋଟିଏ କଡା ଆଇନ କଲେ । ସେଥିରେ ଭାରତୀୟ ସଂଗ୍ରାମୀମାନେ ତାତି ଉଠିଲେ । ବିନା କାରଣରେ ଗିରଫ କରାଯାଇ ପାରିବ । ବିନା ବିଚାରରେ ଜେଲ୍‌ଦଣ୍ଡ ମଧ୍ୟ ଦିଆଯାଇ ପାରିବ ବୋଲି ଏହି ଆଇନ୍‌ରେ ବ୍ୟବସ୍ଥା ଥିଲା । ଏହା 'ରାଓଲାଟ୍' ଆଇନ୍ ନାମରେ ଜଣାଶୁଣା । ଏହାକୁ 'କଳା ଆଇନ୍' କହି ଗାନ୍ଧିଜୀ ସତ୍ୟାଗ୍ରହ କଲେ ଓ 'ଇଂରେଜମାନେ ଶଠ' ବୋଲି କହିଲେ ।

ଥରେ ଜାଲିଆନାୱାଲାବାଗ ଠାରେ ବଡ଼ ସଭାହେଉଥିଲା । ଏହା ପଞ୍ଜାବରେ ଅବସ୍ଥିତ । ଏତେ ବଡ଼ ସଭା ଦେଖି ଇଂରେଜ ସରକାର ନିଜକୁ ଅପମାନିତ ମନେକଲେ । ତେଣୁ ଲୋକଙ୍କ ଉପରକୁ ଜେନେରାଲ ଡାୟାର ଗୁଳି ଚଳାଇ ଦେଲେ । ଶହ ଶହ ଲୋକ ଝଡ଼ିପୋକ ପରି ଆଖି ପିଛୁଳାକେ ଝଡ଼ି ପଡ଼ିଲେ । ପଡ଼ିଆରେ ରକ୍ତର ସୁଅ ଛୁଟିଗଲା । ଇଂରେଜ ସରକାରର ଏ ବର୍ବର ଆଚରଣରେ ଗାନ୍ଧୀଜୀ ସରକାର ପ୍ରତି କଠୋର ହେଲେ ।

ଆଉ ଏକ ଘଟଣା । ପ୍ରଥମ ବିଶ୍ୱ ଯୁଦ୍ଧରେ ତୁର୍କୀ ହାରିଯାଇଥାଏ । ସେହି ଦେଶକୁ ଭାଗଭାଗ କରି ଦେବାକୁ ବ୍ରିଟେନ୍ ଚାହୁଁଥାଏ । ସେ ଦେଶର ସୁଲତାନ ମୁସଲମାନ ଧର୍ମର 'ଧର୍ମଗୁରୁ' । ତେଣୁ ସମସ୍ତଙ୍କର ନମସ୍ୟ ମାତ୍ର ଇଂରେଜ ସରକାର ତାଙ୍କୁ ହୀନିମାନ କଲେ । ଏଥିଯୋଗୁଁ ଗାନ୍ଧିଜୀ ସରକାରଙ୍କ ଉପରେ ଖପ୍ପା ହୋଇଗଲେ ଓ ମୁସଲମାନ୍‌ମାନଙ୍କୁ ନେଇ ଆନ୍ଦୋଳନ କଲେ ।

ଏହି ସବୁ କାରଣ ଗୁଡ଼ିକ ଲାଗି ଗାନ୍ଧିଜୀଙ୍କ ମନ ଭାଙ୍ଗିଗଲା । ସେ ଇଂରେଜଙ୍କୁ ତଡ଼ିବାକୁ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । ସରକାରଙ୍କୁ କୌଣସି ପ୍ରକାର ସହଯୋଗ ନକଲେ ସରକାର ପଙ୍ଗୁ ହୋଇଯିବ ଓ ଦେଶଛାଡ଼ି ଚାଲିଯିବ ବୋଲି ଗାନ୍ଧିଜୀ ଭାବୁଥିଲେ । ବିଶେଷତଃ ବିଦେଶୀ ବସ୍ତ୍ର ବର୍ଜନ

କରିବାକୁ ଓ ବିଦେଶୀ ବସ୍ତ୍ରରେ ନିଆଁ ଲଗାଇ ଦେବାକୁ ସେ କହୁଥିଲେ । ଏହା ଫଳରେ ଭାରତରେ ତିଆରି ଖଦୀର ଆଦର ବଢ଼ିଲା । ଖଦୀ ସତ୍ୟାଗ୍ରହୀ ମାନଙ୍କର ଜାତୀୟ ପୋଷାକ ହେଲା ।'ଖଦୀ ଆନ୍ଦୋଳନ' 'ସ୍ୱଦେଶୀ ଆନ୍ଦୋଳନ' ସହ ସମାନ ବୋଲି ଗାନ୍ଧିଜୀ ଘୋଷଣା କଲେ ।



୧୯୨୧ ମସିହାର 'ଚରଖା -ତ୍ରିରଙ୍ଗ ପତାକା' ୧୯୩୧ ମସିହାରେ ପୁଣି ପରିବର୍ତ୍ତିତ ହୋଇଗଲା । ତାହାର ଗୋଟିଏ ପ୍ରଧାନ କାରଣ ଅଛି । ୧୯୨୧ ମସିହା ଯାଏ ଯେତେ ପ୍ରକାର ତ୍ରିରଙ୍ଗ ପତାକା ବା ଦୁଇ ରଙ୍ଗୀ ପତାକା ବ୍ୟବହୃତ ହୋଇଛି, ସେ ସବୁରେ ଧର୍ମଭାବ ସଂଶ୍ଳିଷ୍ଟ ଥିଲା । ସବୁ ପତାକାରେ ସବୁଜ ଓ ନାଲି ରଙ୍ଗଥିଲା, ତାହା ମୁସ୍‌ଲିମ୍ ଓ ହିନ୍ଦୁ ଧର୍ମକୁ ସୂଚାଉଥିଲା । ୧୯୨୩ ମସିହା ଠାରୁ ୧୯୨୭ ମସିହା ପର୍ଯ୍ୟନ୍ତ ଦେଶର ଜାତିଗତ ସଂପର୍କ ଅତି ଖରାପ ଥିଲା । ହିନ୍ଦୁ ମୁସଲମାନ ଭାଇ ମାନଙ୍କୁ ମଧ ହାଣି ପକାଉଥିଲେ । ମୁସଲମାନ ହିନ୍ଦୁ ଭାଇ ମାନଙ୍କୁ ହାଣି ପକାଉଥିଲେ । ୧୯୨୩ ମସିହାରେ ମୋଟ ୧୧ ଥର ଓ ୧୯୨୬-୨୭ ମସିହା ମଧରେ ମୋଟ ୩୦ ଥର ହିନ୍ଦୁ – ମୁସଲିମ୍ ହଣାକଟା ଲାଗିଥିଲା । ଏଥିରେ ଗାନ୍ଧିଜୀ ଖୁବ୍ ବ୍ୟଥିତ ହୋଇ ପଡ଼ିଥିଲେ । ଦୁଇଗୋଷ୍ଠୀଙ୍କୁ ଶାନ୍ତ କରିବା ପାଇଁ ସେ ବାରମ୍ବାର ଅନଶନ କରୁଥିଲେ । ଗାନ୍ଧିଜୀ କହୁଥିଲେ, ''ଆମେ ସମସ୍ତେ ଈଶ୍ୱରଙ୍କ ସନ୍ତାନ, ତେଣୁ ଭାଇ ଭାଇ । ଆମେ ପରସ୍ପରକୁ

ସୁଖ ପାଇବା ଉଚିତ୍ ।'' ତେଣୁ ସଂକୀର୍ଣ୍ଣ ଧର୍ମଭାବକୁ ଜାତୀୟ ପତାକାରୁ ଦୂରେଇ ଦେଇ ଏକ ନୂତନ ଜାତୀୟ ପତାକା ପ୍ରସ୍ତୁତ କରାଗଲା ।

## ୧୯୩୧ ମସିହାର ତ୍ରିରଙ୍ଗ ପତାକା

ଏହି ବର୍ଷର ତ୍ରିରଙ୍ଗ ପତାକାରେ ଧର୍ମଭାବ ନଯୋଡ଼ି ସେଥିରେ ପ୍ରଗତିଶୀଳ ଚିନ୍ତାଧାରା ଆରୋପ କରାଯିବ ବୋଲି ୧୯୩୧ ମସିହା




କରାଚୀ ଅଧିବେଶନରେ ପ୍ରସ୍ତାବ ଗୃହୀତ ହେଲା । ଏହି ପ୍ରସ୍ତାବ ଅନୁଯାୟୀ ପତାକାର ଉପରେ ଗାଢ଼ କମଳା ରଙ୍ଗ, ମଝିରେ ଧଳା ରଙ୍ଗ ଓ ତଳେ ଗାଢ଼ ସବୁଜ ରଙ୍ଗ ରହିଲା । ମଝି ଧଳା ପଟିରେ ଚରଖା ଚିହ୍ନ ରହିଲା । ଚରଖାଟି ଗାଢ଼ ନୀଳ ରଙ୍ଗର ହେଲା । ତ୍ରିରଙ୍ଗ ପତାକାରୁ ସବୁଦିନ ପାଇଁ ଲାଲ ରଙ୍ଗ ଲୋପ ପାଇଲା ।

ଉପରେ ଥିବା ଗାଢ଼ କମଳା ବା କେଶରୀ ରଙ୍ଗ ସାହସ ଓ ତ୍ୟାଗର ପ୍ରତୀକ, ମଝି ଧଳା ରଙ୍ଗ ସତ୍ୟ ଓ ଶାନ୍ତିର ପ୍ରତୀକ ଏବଂ ତଳ ଗାଢ଼ ସବୁଜ ରଙ୍ଗ ବିଶ୍ୱାସ ଓ ବୀରତ୍ୱର ପ୍ରତୀକ ହେଲା । ଘନ ନୀଳ ରଙ୍ଗର ଚରଖା ଚିହ୍ନ ଲୋକ ମାନଙ୍କର ଆଶା ଓ ଭରସାର ପ୍ରତୀକ ରୂପେ ବିବେଚିତ ହେଲା ।

## ପରାଧୀନ ଭାରତରେ ସ୍ୱାଧୀନତା ଦିବସ ପାଳନ

ପରାଧୀନ ଭାରତରେ 'ସ୍ୱାଧୀନତା ଦିବସ ପାଳନ' -ଏକଥା ଅସମ୍ଭବ ହେଲେ ହେଁ ସତ । ୧୯୨୯ ମସିହା ଡିସେମ୍ବର ମାସରେ ଲାହୋର ଠାରେ

କଂଗ୍ରେସ ଅଧିବେଶନ ବସିଥାଏ । ଏଥିରେ ସଭାପତି ହୋଇଥାନ୍ତି ପଣ୍ଡିତ ଜବାହରଲାଲ୍ ନେହେରୁ । ବହୁତ ପ୍ରତିନିଧି ଏଥିରେ ଯୋଗ ଦେଇଥାନ୍ତି । ଏହି ଅଧିବେଶନରେ ନେହେରୁ 'ପୂର୍ଣ୍ଣ ସ୍ୱାଧୀନତା ପ୍ରସ୍ତାବ' ଆଗତ କଲେ ।



ଡିସେମ୍ବର ୩୧ ତାରିଖ ଅର୍ଦ୍ଧ ରାତ୍ରରେ ଉକ୍ତ ପ୍ରସ୍ତାବ ଗୃହୀତ ହୋଇଗଲା । ତାପରେ ୧୯୩୦ ମସିହା ଜାନୁୟାରୀ ୨ ତାରିଖରେ କଂଗ୍ରେସ କମିଟି ବସି ପ୍ରତି ବର୍ଷ 'ଜାନୁୟାରୀ ୨୬ ତାରିଖ'କୁ ସ୍ୱାଧୀନତା ଦିବସ ରୂପେ ପାଳନ କରାଯିବ ବୋଲି ଘୋଷଣା କଲେ । ସେହି ଅନୁଯାୟୀ ୧୯୩୦ ମସିହା ଜାନୁୟାରୀ ୨୬ ତାରିଖ ଦିନ ପରାଧୀନ ଭାରତରେ ପ୍ରଥମ ସ୍ୱାଧୀନତା ଦିବସ ପାଳନ କରାଗଲା । ଅତି ଆନନ୍ଦ ଉଲ୍ଲାସ ମଧ୍ୟରେ ଦେଶସାରା ଯିଏ ଯେଉଁଠି ପାଇଲେ ତ୍ରିରଙ୍ଗ ପତାକା ଉତ୍ତୋଳନ କଲେ । ପ୍ରଥମ ସ୍ୱାଧୀନତା ଦିବସରେ ଯେଉଁ ତ୍ରିରଙ୍ଗ ପତାକା ଉତ୍ତୋଳିତ ହୋଇଥିଲା ତାହା ଥିଲା ୧୯୨୧ ମସିହାର ''ଚରଖା-ତ୍ରିରଙ୍ଗ ପତାକା ।''

୧୯୩୧ ମସିହାରେ ଦେଶ ପାଇଁ ନୂଆ ତ୍ରିରଙ୍ଗା ପତାକା ପ୍ରସ୍ତୁତ କରାଗଲା । ୧୯୩୨ ମସିହାର ସ୍ୱାଧୀନତା ଦିବସରେ ୧୯୩୧ ମସିହାର ତ୍ରିରଙ୍ଗା ପତାକା ଉତ୍ତୋଳିତ ହେଲା ।୧୯୪୭ ମସିହା ଜାନୁୟାରୀ ୨୬ ତାରିଖ— ସ୍ୱାଧୀନତା ଦିବସ ପର୍ଯ୍ୟନ୍ତ ୧୯୩୧ ମସିହାର ତ୍ରିରଙ୍ଗ ପତାକା ଦେଶରେ

ବ୍ୟବହୃତ ହେଲା । ୧୯୪୭ ମସିହାରେ ଭାରତରେ ଦୁଇ ଦିନ ସ୍ୱାଧୀନତା ଦିବସ ପାଳନ କରାଯାଇଛି । ଗୋଟିଏ ପରାଧୀନ ଭାରତରେ ୧୯୪୭ ମସିହା ଜାନୁୟାରୀ ୨୬ ତାରିଖରେ ଓ ଅନ୍ୟଟି ସ୍ୱାଧୀନ ଭାରତରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ।

## ଆଜାଦ ହିନ୍ଦ୍ ସରକାର ଗଠନ ଓ ତ୍ରିରଙ୍ଗ ପତାକା ଉତ୍ତୋଳନ



୧୯୪୩ ମସିହା ଅକ୍ଟୋବର ୨୧ ତାରିଖରେ ଆଜାଦ ହିନ୍ଦ୍ ସରକାର ଗଠିତ ହେଲା ବୋଲି ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଘୋଷଣା କରିଥିଲେ । ସେ ଜଣେ ଉଗ୍ର ବିପ୍ଳବୀ ଥିଲେ । ଗାନ୍ଧିଜୀଙ୍କ ଅହିଂସା ନୀତିରେ ଇଂରେଜ ମାନଙ୍କୁ ଦେଶରୁ ତଡ଼ି ଦେଇ ହେବ ବୋଲି ସେ ଆଦୌ ବିଶ୍ୱାସ କରୁନଥିଲେ । ଏଥି ପାଇଁ ସଶସ୍ତ୍ର ସଂଗ୍ରାମ ଆବଶ୍ୟକ ବୋଲି କହୁଥିଲେ । ତେଣୁ ସେ ୧୯୪୧ ମସିହାରେ ଇଂରେଜ ସରକାର ଆଖିରେ ଧୂଳୀଦେଇ ଭାରତରୁ ଖସି ପଳାଇଲେ । ଆଫଗାନିସ୍ଥାନ, ରୁଷ୍ ଓ ଜର୍ମାନ ଦେଇ ଶେଷରେ ଜାପାନରେ ପହଞ୍ଚିଲେ । ସେଠାରେ ଆଜାଦ୍ ହିନ୍ଦ୍ ଫଉଜ୍ ଗଠନ କରି ଯୁ ଦ୍ଧ ପାଇଁ ପ୍ରସ୍ତୁତ ହେଲେ ।

ସେତେବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଭୟଙ୍କର ଆକାର ଧାରଣ କରିଥାଏ । ଜାପାନ ଇଂଲଣ୍ଡ ବିରୁଦ୍ଧରେ ଯୁଦ୍ଧ କରୁଥାଏ । ନେତାଜୀ ଜାପାନ ସହାୟତାରେ ଭାରତର ପୂର୍ବପଟୁ ଆକ୍ରମଣ କରିବାକୁ ଯୋଜନା କଲେ । ସେ ସିଙ୍ଗାପୁରରେ ପହଞ୍ଚି ସେଠାରେ ଆଜାଦ୍ ହିନ୍ଦ୍ ସରକାର ଗଠନ କଲେ । ସେ ରାଷ୍ଟ୍ରମୁଖ୍ୟ ଭାବେ ଶପଥ ନେଲେ । ତାଙ୍କ ଅଧୀନରେ ୧୧ ଜଣିଆ ମନ୍ତ୍ରୀମଣ୍ଡଳ କାର୍ଯ୍ୟକଲା । ସେହି

ବର୍ଷ ଡିସେମ୍ବର ୩୦ ତାରିଖରେ ଆଣ୍ଡାମାନ-ନିକୋବର ଦ୍ୱୀପପୁଞ୍ଜ ଗୁଡ଼ିକୁ ନିଜ ଅକ୍ତିଆରକୁ ଆଣି ପ୍ରସିଦ୍ଧ "ଜିମ୍‌ଖାନା" ପଡ଼ିଆରେ ତ୍ରିରଙ୍ଗ ପତାକା ଉତ୍ତୋଳନ କଲେ ।

ଆଣ୍ଡାମାନ ଦ୍ୱୀପର ନାମ "ଶହୀଦ" ଓ ନିକୋବରର ନାମ "ସ୍ୱରାଜ" ହେବ ବୋଲି ବିରାଟ ଜନ ସଭାରେ ସେ ଘୋଷଣା କଲେ । ୧୯୪୪ ମସିହାରେ ସିଙ୍ଗାପୁରରୁ ରେଙ୍ଗୁନକୁ ସରକାରଙ୍କ କାର୍ଯ୍ୟାଳୟ ଉଠାଇ ଆଣି ଭାରତ ଆକ୍ରମଣ କଲେ । ଇମ୍ଫାଲ ଅଧିକାର କରିନେଇ ସେଠାରେ ତ୍ରିରଙ୍ଗ ପତାକା ଉତ୍ତୋଳନ କରି "ଆଜାଦ୍ ହିନ୍ଦ୍ ଫଉଜ"କୁ ଉଦ୍‌ବୋଧନ ଦେଲେ । ଏଥିରେ ଇଂରେଜ ସରକାର ଥରହର ହେଲେ । ମାତ୍ର କେତେକ ପ୍ରତିକୂଳ ପରିସ୍ଥିତି ହେତୁ ପଛକୁ ଫେରି ଆସିବାକୁ ନେତାଜୀ ବାଧ୍ୟ ହେଲେ ।

ନେତାଜୀ ଯେଉଁ ତ୍ରିରଙ୍ଗ ପତାକା ବ୍ୟବହାର କରିଥିଲେ ତାହାଥିଲା କଂଗ୍ରେସର ୧୯୩୧ ମସିହାର ଚରଖା-ତ୍ରିରଙ୍ଗ ପତାକା । "ଚରଖା-ତ୍ରିରଙ୍ଗ ପତାକା"କୁ ନେତାଜୀ ତାଙ୍କ ସରକାରର ଜାତୀୟ ପତାକା ରୂପେ ଗ୍ରହଣ କରି ନେଇ ଥିଲେ ।

ଭାରତ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ସ୍ୱାଧୀନ ହେଲା । ସେହିଦିନ "ଚରଖା-ତ୍ରିରଙ୍ଗ ପତାକା" ସ୍ୱାଧୀନ ଭାରତରେ ଉତ୍ତୋଳିତ ହୋଇନଥିଲା । ଏକ ନୂଆ ତ୍ରିରଙ୍ଗ ପତାକା ଭାରତର ଜାତୀୟ ପତାକା ହୋଇଥିଲା । ସେହି ନୂଆ ତ୍ରିରଙ୍ଗ ପତାକାଟି ୧୯୪୭ ମସିହା ଜୁଲାଇ ୨୨ ତାରିଖରେ ଶାସନ ବିଧାୟକ ସଭାରେ ଗୃହୀତ ହୋଇଥିଲା । ତାହା ହେଲା ସ୍ୱାଧୀନ ଭାରତର ଜାତୀୟ ପତାକା । ଏହି ପତାକାଟି ୧୯୩୧ ମସିହା ତ୍ରିରଙ୍ଗ ପତାକା ଭଳି । ମାତ୍ର ଏଥିରେ ଚରଖା ଚିହ୍ନ ବଦଳରେ ଚକ୍ର ଚିହ୍ନ ଥିଲା । ଏହାକୁ ଅଶୋକ ଚକ୍ର କୁହାଯାଏ ।

## ଜାତୀୟ ପତାକାର ନକ୍ସା

ତ୍ରିରଙ୍ଗ ପତାକାର ଦୈର୍ଘ୍ୟ ପ୍ରସ୍ଥର ଅନୁପାତ ୩ :୨ । ପତାକାର ଉପରେ କେଶରୀ ରଙ୍ଗ, ମଝିରେ ଧଳାରଙ୍ଗ, ତଳେ ଗାଢ଼ ସବୁଜ ରଙ୍ଗ ଅଛି । ମଝି

ଧଳାରଙ୍ଗରେ ଅଶୋକ ଚକ୍ର ସ୍ଥାପିତ ହୋଇଅଛି । ଏହି ଚକ୍ରରେ ୨୪ଟି ଅର ଅଛି । ଚକ୍ରଟି ଗାଢ଼ ନୀଳ ରଙ୍ଗରେ ତିଆରି ହୋଇଅଛି । ଉପର କେଶରୀ ରଙ୍ଗ ତ୍ୟାଗ ଓ ସାହସର ପ୍ରତୀକ,ମଝି ଧଳାରଙ୍ଗ ସ୍ୱଚ୍ଛ, ସତ୍ୟ, ଶାନ୍ତି ଓ ସରଳତାର ପ୍ରତୀକ, ତଳ ଗାଢ଼ ସବୁଜ ରଙ୍ଗ ପ୍ରଗତି, ବିଶ୍ୱାସ ଓ ବୀରତ୍ୱର ପ୍ରତୀକ । ଅଶୋକ ଚକ୍ର ହେଉଛି ସୃଷ୍ଟି ଚକ୍ରର ପ୍ରତୀକ । ଅଶୋକ ଚକ୍ରଟି ଅଶୋକ ସ୍ତମ୍ଭରୁ ଆସିଅଛି । ସମ୍ରାଟ ଅଶୋକ ଉକ୍ତ ସ୍ତମ୍ଭଟିକୁ ସାରନାଥଠାରେ ନିର୍ମାଣ କରାଇଥିଲେ ।




ଏହି ତ୍ରିରଙ୍ଗ ପତାକାକୁ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ସ୍ୱାଧୀନତା ଦିବସରେ ଲାଲକିଲ୍ଲା ଦୁର୍ଗ ଉପରେ ଦେଶର ପ୍ରଥମ ପ୍ରଧାନ ମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଉତ୍ତୋଳନ କରିଥିଲେ । ଏହି ପତାକାଟି ଆମ ଦେଶର ଜାତୀୟ ପତାକା ।

## ଜାତୀୟ ପତାକାର ବ୍ୟବହାର

ଜାତୀୟ ପତାକାର ଯଥାଯଥ ବ୍ୟବହାର ଓ ପ୍ରଦର୍ଶନ ଲାଗି ଭାରତ ସରକାର ଏକ ପତାକା କୋର୍ଡ଼ ପ୍ରଚଳନ କରିଛନ୍ତି ।

- କୌଣସି ବ୍ୟକ୍ତି ବା ପଦାର୍ଥ ପ୍ରତି ଜାତୀୟ ପତାକା ଅବନମନ ହୋଇ ପାରିବ ନାହିଁ ।

- ଜାତୀୟ ପତାକାର ଉପରକୁ ବା ଡାହାଣକୁ ଅନ୍ୟ କୌଣସି ପତାକା ବା ସଂକେତ ସ୍ଥାପିତ ହୋଇ ପାରିବ ନାହିଁ ବା ଉଡ଼ି ପାରିବ ନାହିଁ । ଯଦି ଅନ୍ୟ

କୌଣସି ଦେଶମାନଙ୍କର ପତାକା ଉଡ଼ାଇବାର ଥାଏ, ସେ ସବୁ ଜାତୀୟ ପତାକାର ବାମ ପାର୍ଶ୍ୱରେ ରହିବ ।

● ଜାତୀୟ ପତାକା ଯେଉଁ ପେଣ୍ଡାଲରୁ ଉଡ଼େ ସେହି ପେଣ୍ଡାଲରୁ ଅନ୍ୟ କୌଣସି ପତାକା ଉଡ଼ିପାରିବ ନାହିଁ । ଏକାଧିକ ଦେଶର ପତାକା ସେହି ପେଣ୍ଡାଲରୁ ଉଡ଼ିବାର ଥିଲେ, ପେଣ୍ଡାଲର ଉଚ୍ଚତମ ସ୍ଥାନରୁ ଜାତୀୟ ପତାକା ଉଡ଼ାଯିବ ।

● ଭୂ-ସମାନ୍ତର ଭାବରେ ବା କୌଣିକ ଭାବରେ ଝରକା କାନ୍ଥରୁ, ବାଲ୍‌କୋନୀରୁ, ଘରର ସାମନା ଭାଗରୁ ଠେଙ୍ଗାଦ୍ୱାରା ଜାତୀୟ ପତାକା ଉଡ଼ାଇଲା ବେଳେ ଗାଢ଼ କମଳାରଙ୍ଗର ଅଂଶଟି ଠେଙ୍ଗାର ଦୂରତମ ପାର୍ଶ୍ୱକୁ ରହିବ ।

● ଯେତେବେଳେ ଜାତୀୟ ପତାକାକୁ ଠେଙ୍ଗା ସାହାଯ୍ୟରେ ଉଡ଼ାଯିବ, ସେତେବେଳେ ଗାଢ଼ କମଳା ରଙ୍ଗର ପଟିଟି ଉପରକୁ ରହିବ ।

● ଯେତେବେଳେ ଜାତୀୟ ପତାକାକୁ ଭୂ-ଲମ୍ବ ଅବସ୍ଥାରେ ପ୍ରଦର୍ଶନ କରାଯିବ, ସେତେବେଳେ ଗାଢ଼ କମଳା ରଙ୍ଗର ପଟି ପତାକାର ଡାହାଣ ପାର୍ଶ୍ୱକୁ ରହିବ, ଅର୍ଥାତ୍ ପତାକାକୁ ମୁହଁ କରି ଠିଆ ହୋଇଥିବା ବ୍ୟକ୍ତିର ବାମ ପାର୍ଶ୍ୱରେ ଗାଢ଼ କମଳା ରଙ୍ଗର ପଟି ରହିବ ।

● ରାସ୍ତାଉପରେ ଡୋରି ସାହାଯ୍ୟରେ ଜାତୀୟ ପତାକାକୁ ଲମ୍ବଭାବରେ ଓହଳାଇଲା ବେଳେ ଗାଢ଼ କମଳା ରଙ୍ଗର ପଟି ନିଶ୍ଚିତ ଭାବେ ପୂର୍ବ ଦିଗକୁ କିମ୍ବା ଉତ୍ତର ଦିଗକୁ ରହିବ ।

● କୌଣସି ଶୋଭାଯାତ୍ରା ବା ପ୍ୟାରେଡ଼ରେ ଜାତୀୟ ପତାକା ବ୍ୟବହାର କଲାବେଳେ ଏହା ଡାହାଣ ପାର୍ଶ୍ୱରେ ରହିବ କିମ୍ବା କୌଣସି ପତାକା ଧାଡ଼ିର ମଧ୍ୟଭାଗର ସମ୍ମୁଖ ଅଂଶରେ ଏହା ଉଡ଼ିବ ।

● ସାଧାରଣତଃ କେତେକ ଗୁରୁତ୍ୱପୂର୍ଣ୍ଣ ସରକାରୀ କୋଠା ଉପରେ ତ୍ରିରଙ୍ଗ ପତାକା ଉଡ଼ାଯାଇଥାଏ । ସେଗୁଡ଼ିକ ହେଲା — ରାଷ୍ଟ୍ରପତି ଭବନ, ଉଚ୍ଚତମ ନ୍ୟାୟାଳୟ, ପାର୍ଲାମେଣ୍ଟ ଭବନ, ଉଚ୍ଚ ନ୍ୟାୟାଳୟ, ରାଜ୍ୟପାଳ ଭବନ,

ବିଧାନସଭା ଭବନ, ସେକ୍ରେଟାରିଏଟ୍, କମିଶନର ଅଫିସ୍, ଜିଲ୍ଲାପାଳ ଭବନ, ଜିଲ୍ଲା ପରିଷଦ ଭବନ, ଇତ୍ୟାଦି ।

● କେତେକ ଜାତୀୟ ଦିବସ ଯଥା— ସାଧାରଣତନ୍ତ୍ର ଦିବସ, ସ୍ୱାଧୀନତା ଦିବସ, ଗାନ୍ଧି ଜୟନ୍ତୀ, ରାଷ୍ଟ୍ରୀୟ ଉତ୍ସବ ଓ ରାଷ୍ଟ୍ରୀୟ ସପ୍ତାହ ପାଳନ ବେଳେ ବିଧିପୂର୍ବକ ଜାତୀୟ ପତାକା ବ୍ୟବହାର କରିବାରେ କୌଣସି ନାଗରିକ ବା ଅନୁଷ୍ଠାନ ପ୍ରତି କୌଣସି କଟକଣା ନଥାଏ । କେତେକ ବିଶେଷ ବ୍ୟକ୍ତି ବିଶେଷ ଓ ପଦସ୍ଥ ସରକାରୀ କର୍ମଚାରୀ ମଧ୍ୟ ସେମାନଙ୍କ ମୋଟର କାରରେ ଜାତୀୟ ପତାକା ବ୍ୟବହାର କରିପାରନ୍ତି ।

● କୌଣସି ସ୍ଥାନରେ ଉଡୁଥିବା ଜାତୀୟ ପତାକାକୁ ଠିକ୍ ସୂର୍ଯ୍ୟାସ୍ତ ପୂର୍ବରୁ ଅବତରଣ କରାଯାଏ । ରାଷ୍ଟ୍ରୀୟ ଶୋକ ପାଳନ ବେଳେ ପତାକାକୁ ଅର୍ଦ୍ଧନମିତ କରାଯାଏ । କୌଣସି ବିଶେଷ ବ୍ୟକ୍ତିଙ୍କର ଶବ ସଂସ୍କାର ରାଷ୍ଟ୍ରୀୟ ମର୍ଯ୍ୟାଦା ସହ ସମ୍ପନ୍ନ କରିବାକୁ ଥିଲେ, ତାଙ୍କ ଶବାଧାରରେ ଜାତୀୟ ପତାକା ବ୍ୟବହାର କରାଯାଏ ।

● କୌଣସି ବାଣିଜ୍ୟ, ବ୍ୟବସାୟ, ଧନ୍ଦା ବା ପ୍ୟାଟେଣ୍ଟ ପାଇଁ ବିନା ଅନୁମତିରେ ତ୍ରିରଙ୍ଗ ପତାକା ବା ସେହି ରଙ୍ଗ ଗୁଡ଼ିକର ଅବିକଳ ନକଲ ବା ଡିଜାଇନ୍ ବ୍ୟବହାର କରିବା ଏକ ଦଣ୍ଡନୀୟ ଅପରାଧ ଅଟେ ।

## ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ

ଇଂରେଜ ସରକାର ସହ ଦୀର୍ଘ ୬୨ ବର୍ଷର ସଂଗ୍ରାମ ଫଳରେ ଆମେ ଆମର ସ୍ୱାଧୀନତା ଫେରି ପାଇଲୁ । ଏଥି ପାଇଁ ସଂଗ୍ରାମୀ ମାନେ ଲାଠିମାଡ଼ ଖାଇଛନ୍ତି । ଗୋଡ଼ ହାତ ଭାଙ୍ଗିଛି, ମୁଣ୍ଡ ଫାଟିଛି, ବିପ୍ଳବୀ ମାନଙ୍କୁ କଳାପାଣି ପଠାଇ ସେଠାରେ କଷ୍ଟ ଦିଆଯାଇଛି । ଗିରଫ କରାଯାଇ ଜେଲଦଣ୍ଡରେ ଦଣ୍ଡିତ କରାଯାଇଛି, ଅନେକଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇ ଦିଆଯାଇଛି, ଆଉ କେତେକ ବନ୍ଧୁକ ଗୁଳିରେ ଶହୀଦ ହୋଇଛନ୍ତି । ଘରପୋଡ଼ି, ସମ୍ପତ୍ତି ଲୁଣ୍ଠନର ଦାଉ ସତ୍ୟାଗ୍ରହୀମାନେ ସହିଛନ୍ତି ।

ଦାଦାଭାଇ ନାରୋଜୀ, ଉମେଶ ଚନ୍ଦ୍ର ବାନାର୍ଜି, ମୋତିଲାଲ ନେହେରୁ, ବାଲ୍ ଗଙ୍ଗାଧର ତିଲକ, ଲାଲ୍ ଲଜପତ୍ ରାଏ, ବିପିନ୍ ଚନ୍ଦ୍ର ପାଲ, ମୌଲାନା ଆବୁଲ କାଲାମ ଆଜାଦ, ରାଜେନ୍ଦ୍ର ପ୍ରସାଦ, ଗାନ୍ଧିଜୀ, ଜବାହରଲାଲ ନେହେରୁ, ସୁଭାଷ ଚନ୍ଦ୍ର ବୋଷ, ଆଚାର୍ଯ୍ୟ କୃପାଳିନୀ,ବିନାୟକ ନରେନ୍ଦ୍ରବାଭେ (ବିନବା) ପ୍ରଭୃତି ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ମାନଙ୍କର ବଳିଷ୍ଠ ନେତୃତ୍ୱ ଓ ଅସୀମ ତ୍ୟାଗ ଫଳରେ ଆମେ ସ୍ୱାଧୀନ ହୋଇଛୁ । ସ୍ୱାଧୀନତା ଆନ୍ଦୋଳନରେ ପ୍ରାଣବଳୀ ଦେଇଥିବା ପ୍ରତ୍ୟେକ ସଂଗ୍ରାମୀ ଆମର ପ୍ରାତଃ ସ୍ମରଣୀୟ । ଅନ୍ଦୋଳନର ନେତୃ ମଣ୍ଡଳୀ ଆମର ଚିର ନମସ୍ୟ ।

ଆଜିକୁ ଆମେ ସ୍ୱାଧୀନତା ହାସଲ କରିବାର ପଚାଶ ବର୍ଷ ହୋଇଗଲା । ସେଥିପାଇଁ ଦେଶ ଏବର୍ଷ ''ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ'' ପାଳନ କରୁଛି । ଏହି ଉପଲକ୍ଷେ ପାର୍ଲାମେଣ୍ଟ କେନ୍ଦ୍ରୀୟ ହଲରେ ଉଭୟ ଲୋକସଭା ଓ ରାଜ୍ୟସଭାର ଏକ ମିଳିତ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ମହାମହିମ ରାଷ୍ଟ୍ରପତି ଶ୍ରୀ କେ. ଆର. ନାରାୟଣନ୍ ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଉଦ୍‌ଘାଟନ କରିଥିଲେ । ଜାତୀୟ ସଙ୍ଗୀତ — ''ଜନଗଣମନ''— ଗାନ କରାଯାଇ ଉତ୍ସବ ଆରମ୍ଭ ହୋଇଥିଲା । ଉତ୍ସବ ଆରମ୍ଭରେ ପଣ୍ଡିତ ଭୀମସେନ୍ ଯୋଶୀ ପ୍ରସିଦ୍ଧ ''ବନ୍ଦେ ମାତରମ୍'' ସଙ୍ଗୀତ ଗାନ କରିଥିଲେ । ତାପରେ  ରେକର୍ଡ଼ ଯୋଗେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ହିନ୍ଦୀ, ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଇଂରାଜୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ହିନ୍ଦୀ ଅଭିଭାଷଣ ବାଜିଥିଲା । ତା ପଛେ ପଛେ ଲତା ମଙ୍ଗେସ୍‌କରଙ୍କ ବୀଣାଜିଣା କଣ୍ଠରୁ ଝରିଆସିଲା ପ୍ରସିଦ୍ଧ ଗାନ୍ '' ସାରେ ଜହାଁସେ ଆଚ୍ଛା'' । ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଉଦ୍‌ବୋଧନୀ ଅଭିଭାଷଣ ପ୍ରଦାନ କରିଥିଲେ ମାନ୍ୟବର ରାଷ୍ଟ୍ରପତି । ତାଙ୍କ ଇଂରାଜୀ ଅଭିଭାଷଣକୁ ହିନ୍ଦୀ ଭାଷାରେ ପ୍ରକାଶ କରିଥିଲେ ମାନ୍ୟବର ପ୍ରଧାନ ମନ୍ତ୍ରୀ ଶ୍ରୀ ଇନ୍ଦ୍ର କୁମାର ଗୁଜୁରାଲ । ଉତ୍ସବ ପରିଚାଳନା କରିଥିଲେ ଲୋକସଭାର ବାଚସ୍ପତି ଶ୍ରୀ ପୂର୍ଣ୍ଣ. ଏ. ସାଙ୍ଗମା ।

ଉକ୍ତ ଉତ୍ସବଟି ଅନୁଷ୍ଠିତ ହୋଇଥିଲା ୧୯୯୭ ମସିହା ଅଗଷ୍ଟ ୧୪ ତାରିଖ ଗୁରୁବାର ମଧ୍ୟରାତ୍ରରେ, ଶେଷ ହୋଇଥିଲା ପ୍ରାୟ ରାତି ୧ଘଟିକା ବେଳେ ।

ଦୈବାତ୍ ସୁବର୍ଣ୍ଣ ଜୟନ୍ତୀ ସ୍ୱାଧୀନତା ଦିବସ ମଧ୍ୟ ସେଇ ଶୁକ୍ରବାରରେ ପଡ଼ିଛି, ୫୦ ବର୍ଷ ପୂର୍ବେ ଏପରି ଏକ ଶୁକ୍ରବାରରେ ଆମେ ସ୍ୱାଧୀନତା ଦିବସ ପାଳନ କରିଥିଲେ ।

ଏହି ପୂଣ୍ୟ ଅବସରରେ ଆମେ ଅଗଣିତ ବୀର ସ୍ୱାଧୀନତା ସଂଗ୍ରାମୀ ମାନଙ୍କ ଅମୂଲ୍ୟ ଅବଦାନ ସ୍ମରଣ କରୁଛୁ, ତାଙ୍କ ଉଦ୍ଦେଶ୍ୟରେ କୋଟି କୋଟି ପ୍ରଣାମ ଜଣାଉଛୁ । ଶୁଭ ହେଉ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ, ସମୃଦ୍ଧ ହେଉ ଭାରତ ବର୍ଷ ।

''ଜୟହିନ୍ଦ୍''

''ବନ୍ଦେ ମାତରମ୍''

❊❊❊

